# ଭିଟାମାଟିର ମୋହ

ଲେଖକ - ଡକ୍ଟର ଦିଗରାଜ ବ୍ରହ୍ମା
ବ୍ରହ୍ମାନିବାସ, ମହାବୀର ବିହାର,
ପଟିଆ ରେଳ ଷ୍ଟେସନ ପାଖ
ପୋ- କଳାରାହାଙ୍ଗ, ଭାୟା- କିଟ୍
ଭୁବନେଶ୍ୱର - ୭୫୧୦୨୪
ମୋ. : ୯୪୩୭୭୮୪୫୯୨, ୯୩୩୭୭୬୮୪୭୨

ପ୍ରକାଶକ - ରାଷ୍ଟ୍ରୀୟ ସାହିତ୍ୟ ସଂସ୍ଥାନ
୭୨୨, ଜନପଥ, ୟୁନିଟ୍-୩, ଭୁବନେଶ୍ୱର-୭୫୧୦୦୧

ପ୍ରଚ୍ଛଦ ଓ ମୁଦ୍ରଣ - କମ୍ପ୍ୟୁପ୍ରିଣ୍ଟ, ଲିଙ୍କରୋଡ, କଟକ

ପ୍ରଥମ ପ୍ରକାଶନ - ୨୦୨୦

ମୂଲ୍ୟ - ଟ.୪୫.୦୦

**BHITAMATIRA MOHA**

By - Dr. Digaraj Brahma
Brahma Nivas, Mahavir Vihar
P.O- Kalarahanga, Via-KIIT
Bhubaneswar-751024
Mob. : 9437784592, 9337768472

Published by - Rashtriya Sahitya Sansthan
722, Janpath, Unit-3, Bhubaneswar-751001

Printed at - Compuprint, Link Road, Cuttack

First Edition - 2020

Price - Rs. 45/-

**ISBN. 978-81-931182-3-2**

# ପୁସ୍ତକଟି ସଂପର୍କରେ କିଛି....

ପିଲାମାନେ ଶୈଶବ ଛାଡ଼ି କିଶୋର ଅବସ୍ଥାକୁ ଆସିଲେ ସେମାନଙ୍କ ଆଗ୍ରହ ଓ ରୁଚିରେ ଅସମ୍ଭବ ପରିବର୍ତ୍ତନ ଦେଖାଯାଇଥାଏ । ସେମାନେ ପ୍ରତ୍ୟେକ କଥାରେ କାର୍ଯ୍ୟ ଓ କାରଣର ସଂପର୍କ ଖୋଜି ପାଇବାକୁ ଚେଷ୍ଟା କରିଥାନ୍ତି । ପ୍ରତ୍ୟେକ ଚରିତ୍ରର କଥପୋକଥନରୁ ଯୁକ୍ତିଯୁକ୍ତ ବିଶ୍ଲେଷଣ ମଧ୍ୟ ଖୋଜିଥାନ୍ତି । ସେଥିପାଇଁ ସ୍ୱଭାବିକ ଭାବେ ଗତିକରୁଥିବା ବିଷୟବସ୍ତୁ ଯଦି ସେମାନଙ୍କ ମନକୁ ଆକର୍ଷଣ କରେ ନାହିଁ, ତେବେ ସେମାନେ ବିଷୟବସ୍ତୁଟିକୁ ସହଜରେ ଗ୍ରହଣ କରନ୍ତି ନାହିଁ । ଗଳ୍ପରେ ପରିବେଷିତ ବିଶୟବସ୍ତୁ ଗ୍ରହଣଯୋଗ୍ୟ ନହେଲେ, ସେମାନେ ମଧ୍ୟ ମାନସିକ ସ୍ତରରେ ଗଳ୍ପଟିକୁ ପ୍ରତ୍ୟାଖ୍ୟାନ କରିଥାନ୍ତି ।

ତେଣୁ ଏସବୁ ବିଷୟକୁ ଆଖି ଆଗରେ ରଖି ଓ ସେମାନଙ୍କ ମନସ୍ତାତ୍ତ୍ୱିକ ସ୍ଥିତିକୁ ଅନୁଧ୍ୟାନ କରି ଲେଖକଙ୍କ ରଚିତ ଦଶଗୋଟି ଗଳ୍ପକୁ ପୁସ୍ତକଟିରେ ସ୍ଥାନ ଦିଆଯାଇଅଛି । ଏସବୁ ଗଳ୍ପରେ ସତେ ଯେମିତି ସେମାନଙ୍କ ପରିବେଶ ଅଛି ଓ ସେମାନେ ମଧ୍ୟ ଅଛନ୍ତି ।

ଆଶା, ଲେଖକଙ୍କର ଏତାଦୃଶ ନମ୍ର ପ୍ରଚେଷ୍ଟାକୁ ପିଲାମାନଙ୍କ ସହିତ ସଂଶ୍ଲିଷ୍ଟ ବ୍ୟକ୍ତି ବିଶେଷ, ସେମାନଙ୍କ ଅଭିଭାବକ ଓ ରାଜ୍ୟର ଶିକ୍ଷକ ଶିକ୍ଷୟିତ୍ରୀଗଣ ସମ୍ମାନ ଓ ସ୍ୱୀକୃତି ପ୍ରଦାନ କରିବେ ।

ପିଲାମାନେ ମଧ୍ୟ ଗଳ୍ପଗୁଡ଼ିକୁ ପଢ଼ିଲା ସମୟରେ ଆନନ୍ଦଲାଭ କରିବେ ଓ ଭବିଷ୍ୟତ ଜୀବନପାଇଁ ଅନେକ କଥା ଶିଖିବାର ସୁଯୋଗ ଲାଭ କରିବେ ।

ଏହି ଉଚ୍ଚକୋଟୀର ପୁସ୍ତକଟିର ପ୍ରକାଶନ ଅବସରରେ ଓଡ଼ିଶାର ଅନ୍ୟତମ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ତଥା ରାଜ୍ୟର ସର୍ବପୁରାତନ ସାହିତ୍ୟାନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ' କଟକଙ୍କ ଦ୍ୱାରା ପ୍ରଦତ୍ତ ରାମକୃଷ୍ଣ ନନ୍ଦ ଶିଶୁସାହିତ୍ୟ ସମ୍ମାନ ପ୍ରାପ୍ତ ଓ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ବର୍ଦ୍ଧିତ ହେବାପାଇଁ ମନୋନୀତ ହୋଇଥିବା ଡକ୍ଟର ଦିଗରାଜ ବ୍ରହ୍ମାଙ୍କ ସୃଜନକ୍ଷମ ଦୀର୍ଘ ନିରାମୟ ଜୀବନ କାମନା କରୁଅଛି ।

**ବୈକୁଣ୍ଠନାଥ ପତି**


ସୂଚୀପତ୍ର





# ଧଳାପାରା

ସେଦିନ ଅଫିସରୁ ଆସି ଘରେ ପହଞ୍ଚୁ ପହଞ୍ଚୁ ସାନପୁଅ କାହ୍ନା କହିଲା, 'ବାପା ! ବାପା ! ଜାଣିଲଣି; ଆଜି ଆମଘର ଛାତ ଉପରେ କୁନି ଧଳା ପାରାଟିଏ ପଡ଼ି ଛଟପଟ ହେଉଥିଲା । ବୋଉ ଲୁଗା ଶୁଖାଇବା ପାଇଁ ଛାତ ଉପରକୁ ଯାଇଥିଲା । ଦେଖିଲା ପାରାଟି ଅସହାୟ ଅବସ୍ଥାରେ ପଡ଼ିଛି । ବୋଉ କୁନି ପାରାଟି ମୁହଁରେ ପାଣି ଦେଲା । ପାରାଟି ପାଣି ପିଇଲା ଓ ଟିକିଏ ଚେଙ୍ଗା ଦେଖାଗଲା । ତା'ପରେ ବୋଉ ଘରକୁ ଆସି ଚାଉଳ ମୁଠାଏ ନେଲା । କୁନି ପାରାଟି ଆନନ୍ଦରେ ଚାଉଳତକ ଖାଇଲା ।'

''ତା'ପରେ ତୁମେ କ'ଣ କଲ ?'', ମୁଁ ପଚାରିଲି । କାହ୍ନା କହିଲା, ''ବୋଉ ପାରାଟିକୁ ଛାତ ଉପରେ ଛାଇଥିବା ଗୋଟିଏ କୋଣରେ ରଖି ଘରକୁ ଚାଲି ଆସିଲା । ଆମ୍ଭେମାନେ ମଧ୍ୟ ବୋଉ ପଛେ ପଛେ ଘରକୁ ଚାଲି ଆସିଲୁ । କିଛି ସମୟପରେ ମୁଁ ଛାତଉପରକୁ ଯାଇ କୁନି ପାରାଟିକୁ ଖୋଜିଲି । ସେଠାରେ ଆଉ କୁନି ଧଳା ପାରାଟି ନଥିଲା । ବୋଧହୁଏ ଟିକିଏ ସତେଜ ହୋଇ କେଉଁଠିକୁ ଉଡ଼ିଯାଇଥିବ ।''

ମୁଁ କାହ୍ନାର କଥା ଶୁଣି କହିଲି, ''ଯାହା ହେଉ, ତୁମ୍ଭେମାନେ ଭଲ କାମଟିଏ କଲ । ଅସହାୟ ପାରା ଛୁଆଟିକୁ ଖୁଆଇ ପିଆଇ ଉଡ଼େଇ ଦେବାରେ ସାହାଯ୍ୟ କଲ । ଜୀବପ୍ରତି ଦୟା କରିବାଠାରୁ ଆଉ ଭଲ କାମ ପୁଣି କ'ଣ ଅଛି !

ମୋ କଥା ଶୁଣି କାହ୍ନା ହସିଲା ।

ମୁଁ ମଧ୍ୟ କାହ୍ନ ସହିତ ହସିଲି ।

ତା'ପରଦିନର ଘଟଣା ।

ସମୟ ପ୍ରାୟ ସକାଳ ସାତଟା ହେବ । ଆମେ ସମସ୍ତେ ତୃତୀୟ ମହଲା କୋଠାଘରର ବୈଠକ ଘରେ ବସି ପାଠ ପଢୁଛି । କାହ୍ନା ତା'ର ଅନ୍ୟ ଭାଇମାନଙ୍କ ସହିତ ବସି ପାଠ ପଢ଼ାଶୁଣା କରୁଥାଏ ।

ଦାଣ୍ଡ ଘରକୁ ପ୍ରବେଶ କରିବାର କବାଟଟି ଅଳ୍ପ ଖୋଲାଥାଏ । ଏହାଫଳରେ ଆମ ପାଠପଢ଼ାକୁ ବ୍ୟାଘାତ ନକରି ପଡ଼ୋଶୀମାନେ ଘରର ଅନ୍ୟ ସଦସ୍ୟମାନଙ୍କ ସହିତ ଅନ୍ୟଘରେ ଦେଖାସାକ୍ଷାତ କରି ଚାଲିଯାଆନ୍ତି ।

ପାଠପଢ଼ା ମଝିରେ ହଠାତ୍ କାହ୍ନା ଡାକ ଛାଡ଼ିଲା, ''ବୋଉ ! ବୋଉ ! ଦେଖିଲୁଣି, କିପରି ଠୁକୁର ଠାକୁର ହୋଇ କୁନି ଧଳା ପାରାଟି ଆମ ଘର ମଧ୍ୟକୁ ଚାଲି ଆସୁଅଛି ।''

ମୁଁ ଦେଖିଲି ସତକୁ ସତ ପାରାଟି ଝୁଲି ଝୁଲି ମୁଣ୍ଡ ହଲାଇ ଘର ଭିତରକୁ ପଶୁଅଛି । ବୋଧହୁଏ ଘର ଛାତ ଉପରକୁ ଉଡ଼ି ଆସିବାକୁ କ୍ଷମ ହୋଇଅଛି । ଛାତ ଉପରୁ ଘର ତଳକୁ ପାହାଚରେ ଚାଲି ଚାଲି ଆସିଛି ଓ ଆମ ଘରର ଦାଣ୍ଡ କବାଟଟି ଖୋଲା ଥିବାରୁ ସହଜରେ ଘର ମଧ୍ୟକୁ ପଶି ଆସିଛି ।

ପାରାଟିକୁ ଦେଖି ଆମ ସମସ୍ତଙ୍କର ଆନନ୍ଦ କହିଲେ ନସରେ ! ମାତ୍ର ପାରାଟି ଆମ ପାଖକୁ ନଆସି ସିଧା ସିଧା ଚାଲିଲା ରୋଷେଇ ଘର ଭିତରକୁ । ବୋଧ ହୁଏ ସେ ଜାଣିଥିଲା ସେଇ ଘର ଭିତରେ ଅଛନ୍ତି ତାକୁ ମରଣମୁଖରୁ ପାଣି ଓ ଖାଦ୍ୟ ଦେଇ ବଞ୍ଚେଇଥିବା ମା' ଜଣକ ।



ପାରା ରୋଷେଇ ଘର ଆଡ଼କୁ ମୁହାଁଉଥିବାର ଦେଖି କାହ୍ନା ପାଟିକରି ଡାକ ଛାଡ଼ିଲା, ‘‘ବୋଉ ! ବୋଉ ! ପାରା ରୋଷେଇ ଘରକୁ ଯାଉଛି ।’’

କାହ୍ନାର ପାଟି ଶୁଣି ବୋଉ ତା’ର ରୋଷେଇ ଘରୁ ବାହାରି ଆସିଲେ । ଦୁଆର ମୁହଁରେ ପହଞ୍ଚି ଥିବା ପାରାଟିକୁ ଅତି ଆନନ୍ଦରେ ତଳୁ ଉଠେଇ ନେଲେ । ପିଠିରେ ତା’ର ହାତ ଆଉଁଶେଇ ଆଣିଲେ । କହିଲେ ‘‘କ’ଣ ଭୋକ ଲାଗୁଚି ? ଖାଇବୁ ?’’ ଏହା କହି ବୋଉ ତାକୁ କିଛି ସୋରିଷ ଚାଉଳ ଖାଇବାକୁ ଦେଲେ । ପାଣି ଦେଲେ । ପୁଣି କୁନି ପାରାଟିକୁ ନେଇ ଛାତ ଉପରେ ଛାଡ଼ି ଆସିଲେ । କୁନି ଧଳା ପାରାଟି ଛାତ ଉପରୁ ଉଡ଼ି ଉଡ଼ି ଚାଲିଗଲା ।

ଆଉ ଆମ ଘରକୁ ପରଦିନ ଆସିଲା ନାହିଁ ।

ଦିନେ ଆମ ପାଠପଢ଼ା ସମୟରେ ଘରର ବାହାରେ ଫଡ଼ଫଡ଼ ଶବ୍ଦ ଶୁଣିଲୁ । ଦାଣ୍ଡ ଘରର ଅଳ୍ପ ଦୂରରେ ପବନ ଆସିବା ପାଇଁ ଏକ ଗ୍ରୀଲ୍ ଲାଗିଥିଲା । ସେଥିରେ ଅଳ୍ପ ଫାଙ୍କ ଥିଲା । ସେହି ଫାଙ୍କ ଦେଇ କୁନି ଧଳା ପାରାଟି ଆମ ଘରକୁ ପଶିବାକୁ ଚେଷ୍ଟା କଲା । କାରଣ ସେ ଦିନ ଆମ ଘର ଭିତରକୁ ପ୍ରବେଶ କରିବାକୁ ଥିବା କବାଟଟି ବନ୍ଦ ଥିଲା । ଯାହା ହେଉ ସେଇ ଫାଙ୍କ ଦେଇ ପାରାଟି ଆମ ଘର ମଧ୍ୟକୁ ପ୍ରବେଶ କଲା । ଆମେ ପାଠ ପଢୁଥିବା ସ୍ଥାନରେ ଆସି ବସିଗଲା । ଆମ୍ଭେମାନେ ଯେମିତି ବହି ପଢୁଥିଲୁ ସେମିତି ବହି ଆଡ଼କୁ ଚାହିଁ ରହିଲା । ସତେ ଯେମିତି ସେ ଆମ୍ଭମାନଙ୍କ ସହିତ ପାଠ ପଢୁଅଛି ।

ପାରାଟି ଫେରି ଆସିଥିବାର ଦେଖି କାହ୍ନା ଖୁସି ହୋଇ ଡାକ ଛାଡ଼ିଲା, ବୋଉ ! ବୋଉ ! ତୋ କୁନି ଧଳାପାରା ଆସି ଆମ ପାଖରେ ଆସି ପାଠ ପଢ଼ିଲାଣି । ଦେଖିବୁ ଆ, ସେ କେମିତି ପାଠ ପଢୁଛି ।

କାହ୍ନାର ଡାକ ଶୁଣି ରୋଷେଇଘରୁ ବୋଉ ଚାଲି ଆସିଲେ । ପାରାଟିକୁ ଅତି ସ୍ନେହରେ ଉଠେଇ ନେଲେ । ଗେହ୍ଲା କଲେ । ତାକୁ ଲକ୍ଷ୍ୟକରି କହିଲେ, ''ଏଇ କେଇଦିନ ହେଲା ତୁ କେଉଁଠି ଥିଲୁ ? ଆମେ ତୋତେ ମନେ ମନେ କେତେ ଖୋଜୁଥିଲୁ ।''

ତା'ପରେ ସେ କୁନି ପାରାଟିକୁ ଖୋଇପେଇ କୋଠା ଉପରଛାତରେ ଛାଡ଼ିଦେଲେ । ପାରାଟି ଉଡ଼ି ଉଡ଼ି ତା'ର ରହଣି ସ୍ଥାନକୁ ଚାଲିଗଲା । ସେଇ ଦିନଠାରୁ ପାରାଟି ପ୍ରାୟ ପ୍ରତିଦିନ ଥରେ ଆସି ଆମ ଘରେ ପହଞ୍ଚିଯାଏ । ଚାହୁଁ ଚାହୁଁ ସେ ଆମ ଘରର ଏକ ସଦସ୍ୟ ହୋଇଗଲା । କାହାକୁ ଡରିଲା ନାହିଁ । ଇଚ୍ଛାମତେ କାହା ମୁଣ୍ଡରେ ବସିଲା ତ; କାହା କୋଳରେ ବସି ଗେହ୍ଲା ହେଲା । ଦିନବେଳେ ଆମେ ଟେଲିଭିଜନ

ଦେଖିଲାବେଳେ ଆମ କୋଳରେ ବସି ସେ ମଧ୍ୟ ଟେଲିଭିଜନର ଛବିଗୁଡ଼ିକୁ ଦେଖିବାକୁ ଲାଗିଲା ।

ଦିନେ ଛୁଟିଦିନେ ମୁଁ ଶୋଇବା ଘରେ ଟେଲିଭିଜନ ଦେଖୁଥାଏ । ଦେଖିଲି ମୁଁ ଥିବା ତୃତୀୟ ମହଲା ଘରର ବାଲ୍‌କୋନୀ ଦେଇ ପାରାଟି ଉଡ଼ି ଉଡ଼ି ଆସି ସିଧା ମୋ କୋଳରେ ବସି ପଡ଼ିଲା । ମୁଁ ତା'ର କୁନି ଦେହରେ ହାତ ବୁଲେଇ ଆଣିଲି । ଦେଖିଲି ତା'ର ପରଗୁଡ଼ିକ ପୂର୍ବଭଳି ସତେଜ ଓ ସଫା ନାହିଁ । ସେ ଏକ ରକମ ରୋଗିଣା ହୋଇଯାଇଅଛି ।

ମୁଁ କାହ୍ନାକୁ କହିଲି, ''କାହ୍ନା ! ପାରାଟି ବୋଧହୁଏ ଇତି ମଧ୍ୟରେ ଅସୁସ୍ଥ ହୋଇଯାଇଅଛି । ବୋଉକୁ କହ ସେ ହଳଦୀ ପାଣିରେ ଧୋଇଧାଇ ଗାଧୋଇ ଦେବ ।''

ସେ ଦିନ ପାରାଟିକୁ ଅତି ଯତ୍ନରେ ଗାଧୋଇ ଦିଆଗଲା । ତା'ର ଧୋବଫରଫର ଦେହଟି ଅପେକ୍ଷାକୃତ ଚିକ୍କଣ ଦେଖାଗଲା । ପ୍ରତିଦିନପରି ସେ ତା'ର ଖାଦ୍ୟ ଖାଇଲା । ଆମ ସମସ୍ତଙ୍କ ସହିତ କିଛି ସମୟ କଟାଇ ବାଲ୍‌କୋନୀ ବାଟ ଦେଇ ଉଡ଼ିଗଲା ।

ସେହି ଦିନଠାରୁ ପାରାଟି ଆଉ ଆମ ଘରକୁ ଆସିଲା ନାହିଁ । ଆମ ଛାତଉପରେ ଅନ୍ୟ ପାରାମାନେ ଘୂରି ବୁଲୁଥିବା ବେଳେ ଆମେ ତାକୁ ଖୋଜିଲୁ । ପାରାମାନେ ଯଦି କଥା କହୁଥାନ୍ତେ, ଆମେ ହୁଏତ ତାଙ୍କୁ ପଚାରିଥାନ୍ତୁ ''ସେଇ ଛୁଆ ଧଳା ପାରାଟି ଗଲା କୁଆଡ଼େ ?''

ତା'ର ଅନୁପସ୍ଥିତି ଆମ୍ଭମାନଙ୍କ ମନରେ ବହୁତ ଆଘାତ ଦେଲା । ଆମେ ଭାବିଲୁ ହୁଏତ କୌଣସି ଦୁର୍ଘଟଣାର ସମ୍ମୁଖୀନ ହୋଇ ପାରାଟି ଆଉ ବଞ୍ଚିନାହିଁ । ବଞ୍ଚି ଥାଆନ୍ତା ଯଦି, ତେବେ ସେ କ'ଣ ଆମ ସହିତ ଲଗାଇଥିବା ସ୍ନେହ ମମତାର ବନ୍ଧନକୁ ଏତେ ଶୀଘ୍ର କାଟି ଦେଇଥାନ୍ତା !

ଦିନେ ଅଫିସରୁ ଭାରାକ୍ରାନ୍ତ ମନନେଇ ଘରକୁ ଫେରି ଆସିଥାଏ। ଆର୍ମଚେୟାର ଉପରେ ଟିକିଏ ଗଡ଼ି ପଡ଼ିଥାଏ।

ସେଇ ସମୟରେ କାହ୍ନା ଘର ଭିତରକୁ ପ୍ରବେଶ କଲା ଓ କହିଲା, ''ବାପା! ବାପା! ଜାଣିଲନି ଆମ ଘରକୁ ଆସୁଥିବା ଧଳା ପାରା କଥା।''

ମୁଁ ଆଗ୍ରହର ସହିତ ପଚାରିଲି, ''କ'ଣ ହେଲା?''

ସେ କହିଲା, ''ମୋର ସାଙ୍ଗ ଆଜି କହୁଥିଲା'', ''ତାଙ୍କ ଘରେ ଏକ କୁନି ଧଳାପାରା ରହୁଥିଲା। ସେ ପ୍ରତିଦିନ ସେଠାରୁ ଉଡ଼ି ବାହାରକୁ ଚାଲିଯାଏ ଓ ସନ୍ଧ୍ୟାବେଳକୁ ପୁଣି ଫେରିଆସେ। ଦିନେ ଆମେ ଦେଖିଲୁ ତା'ର ପରକୁ କିଏ ଧୋଇଧାଇ ଚିକ୍କଣ କରି ଦେଇଛି। ହଳଦୀ ପାଣିରେ ଗାଧୋଇ ଦେଇଛି।''

''ତା'ପରେ କ'ଣ ହେଲା?'' ମୁଁ ପଚାରିଲି। କାହ୍ନା କହିଲା, ''ସେ କହୁଥିଲା ତା'ର ବାପା ଆସି ପାରାଟିକୁ ଦେଖିଲେ। କହିଲେ ମୁଁ ଆଉ ଧଳା ପାରାଟିକୁ ପଦାକୁ ଯିବାକୁ ଦେବନି। କାରଣ ଏଇ କୁନି ଧଳାପାରାଟି ହେଉଛି ଆମ ଘରର ଲକ୍ଷ୍ମୀ। ସେ ଆମ ଘର ଛାଡ଼ି ଅନ୍ୟ ଘରକୁ ଚାଲିଯାଉଛି ମାନେ ଆମ ଘରର ଲକ୍ଷ୍ମୀ ଅନ୍ୟ ଘରକୁ ଚାଲିଯାଉଛନ୍ତି। ଏହା କହି ସେ ସଙ୍ଗେ ସଙ୍ଗେ କତୁରିଟିଏ ଆଣି ତା'ର ଡେଣା ଦୁଇଟିର ପର କାଟି ଛୋଟ କରିଦେଲେ।''

''ତା'ହେଲେ ତାଙ୍କ ଘରର ପାରା ତାଙ୍କ ଘରେ ଅଛି। ଆମର ବ୍ୟସ୍ତ ହେବାର କିଛି ନାହିଁ।'' ମୁଁ କହିଲି।

କାହ୍ନା ମନଦୁଃଖ କରି କହିଲା, ''ସେ କଥା ହୋଇଥିଲେ ତ ବାପା ଖୁବ୍ ଭଲ ହୋଇଥାଆନ୍ତା। ଯେହେତୁ ଛୋଟ ପର ଯୋଗୁଁ ପାରାଟି ଉଡ଼ି ପାରୁନଥିଲା, ତାକୁ ବିରାଡ଼ିଟିଏ ଆସି ଖାଇଦେଲା।''



ମୁଁ ଲକ୍ଷ୍ୟକରି କାହ୍ନାର ମୁହଁ ଦୁଃଖରେ କଳା ପଡ଼ିଯାଉଛି । ହଠାତ୍ ମୋ ମୁଖ ମଣ୍ଡଳ ବିବର୍ଣ୍ଣ ହୋଇ ଆସିଲା । ହଳଦୀ ଲଗାଇ ପାରାଟିକୁ ଗାଧୋଇ ଦେବାର ପରିଣାମ ଯେ ଏପରି ହେବ - ଏକଥା ମୁଁ ବୁଝିପାରିଲି ନାହିଁ କେମିତି ?

ଯଦି ବୁଝିଥାନ୍ତି, ତେବେ ସବୁଦିନେ ଧଳା ପାରାଟି ଆମ ଘରକୁ ବୁଲି ଆସୁଥାନ୍ତା ।

ଆଉ ଆମେ ପୂର୍ବଭଳି ତା'ସହିତ ଆମର ହସଖେଳ, ସୁଖ ଦୁଃଖ ବାଣ୍ଟୁଥା'ନ୍ତୁ ।



# ବୁଲା କୁକୁର

ସେଦିନ ସକାଳୁ ସକାଳୁ କଲୋନୀ ସାରା ଘଟଣାଟି ପ୍ରଘଟ ହୋଇଗଲା । କଲୋନୀ ନିକଟସ୍ଥ ରାସ୍ତାରେ ଗୋଟିଏ ସଦ୍ୟଜାତ କନ୍ୟା ସନ୍ତାନ ପଡ଼ିଛି । କିଏ କେତେବେଳୁ ସେଇ ସନ୍ତାନଟିକୁ ପାଖରାସ୍ତାରେ ପକାଇଯାଇଛି କେହି ଜାଣନ୍ତି ନାହିଁ । ତା'ର ଦାବିଦାର ମଧ୍ୟ କେହି ନାହାଁନ୍ତି । ପାରିପାର୍ଶ୍ୱିକ ପରିସ୍ଥିତି ଅନୁଧ୍ୟାନ କଲେ ଜଣାପଡ଼େ ଯେ ପୂର୍ବରାତିରେ ହୁଏତ କେହି ପିଲାଟିକୁ ସେଠାରେ ଛାଡ଼ି ଚାଲିଯାଇଛନ୍ତି ।

ଏହାଠାରୁ ଅନ୍ୟ ଏକ ଆଶ୍ଚର୍ଯ୍ୟଜନକ ଘଟଣା ହେଲା ଏମିତି !

ସେହି ପିଲାଟିକୁ ଏକ ବୁଲାକୁକୁର ଜଗି ରହିଛି । ସେ କାହାରିକୁ ପିଲାଟିକୁ ଛୁଇଁବାକୁ ଦେଉନାହିଁ । କେହି ପିଲାଟିର ପାଖକୁ ଗଲେ ସେ ଭୋ ଭୋ କରି ଭୁକି କାମୁଡ଼ିବାକୁ ଗୋଡ଼େଇ ଆସୁଛି ।

ଏପରି ଖବର ଶୁଣି ଘଟଣାଟି ଘଟିଥିବା ସ୍ଥାନକୁ ଆଖପାଖ ଅଞ୍ଚଳର ଲୋକଙ୍କ ସୁଅ ଛୁଟିଲା । କେହି କେହି କହିଲେ, ''ଦୁନିଆରେ ପୁଣି ଏମିତି ଲୋକ ଅଛନ୍ତି, ଯେଉଁମାନେକି ନିଷ୍ପାପ ଶିଶୁକୁ ରାସ୍ତା କଡ଼ରେ ପକାଇ ଚାଲିଯାଆନ୍ତି । ଶିଶୁଟି ବା କି ଅପରାଧ କରିଥିଲା ! ତା'ର ଯତ୍ନ ନେବାପାଇଁ କେହି ନାହାଁନ୍ତି । କିନ୍ତୁ ଶିଶୁଟିକୁ ଜଗି ରହିଅଛି ଏଣେତେଣେ ବୁଲି ଜୀବନ ବିତାଉଥିବା ବୁଲା କୁକୁରଟିଏ । ପଶୁଟିଏ ହେଲେ ମଧ୍ୟ ସେ ଶିଶୁ ସନ୍ତାନଟିର ମୂଲ୍ୟ ବୁଝିଛି ।''

ଘଟଣା କ'ଣ ଜାଣିବା ପାଇଁ କଲୋନୀ ବାସିନ୍ଦା ସୁମତୀ ଦେବୀ ଯାଇଁ ସେଠାରେ ପହଞ୍ଚିଲେ । ଦେଖିଲେ ଶିଶୁ ଓ କୁକୁରଟିର ଛବି ଉଠାଇଛନ୍ତି ଟିଭିବାଲାଏ । ବୁଲା କୁକୁରଟି କାହାରିକୁ ପିଲାଟିର ପାଖକୁ ଛାଡୁନାହିଁ । ଯଦି କିଏ ଯାଉଛନ୍ତି, ତେବେ ସେ କାମୁଡ଼ିବା ପାଇଁ ଗୋଡ଼େଇ ଆସୁଛି ।



ସୁମତୀ ଦେବୀଙ୍କ ମନରେ ସଦ୍ୟ ପରିତ୍ୟକ୍ତ କନ୍ୟାସନ୍ତାନଟି ପ୍ରତି ଦୟା ଆସିଲା । ସେ ମନେ ମନେ ଭାବିଲେ, ମୋ ପିଲାଟି ଯଦି ଏଇପରି ଏଠାରେ ପଡ଼ି ରହିଥାନ୍ତା, ତେବେ ମୁଁ କ'ଣ ତାକୁ ଏତେବେଳଯାଏ ପକାଇ ରଖିଥାନ୍ତି । ମୁଁ ଯଦି ତାକୁ ଆପଣେଇ ନିଅନ୍ତି; ତେବେ ଖୁବ୍ ଭଲ ହୁଅନ୍ତା ।''

ତାଙ୍କର ମନର ଭାବନା ମନରେ ଅଛି । ହଠାତ୍ ବୁଲାକୁକୁରଟି ଶିଶୁଟିକୁ ଛାଡ଼ି ତାଙ୍କ ପାଖକୁ ଦୌଡ଼ି ଅସିଲା । ସେ ଭାବିଲେ ବୋଧହୁଏ

ସେ ତାଙ୍କୁ ଗୋଡ଼ାଇ କାମୁଡ଼ିବାକୁ ଆସୁଛି । ତେଣୁ ତା'ର ଆକ୍ରମଣରୁ ରକ୍ଷା ପାଇବା ପାଇଁ ସେ ତରତର ହୋଇ ପଛକୁ ଘୁଞ୍ଚିଆସିଲେ ।

ମାତ୍ର ସେମିତି କିଛି ଘଟିଲା ନାହିଁ । ବୁଲାକୁକୁରଟି ତାଙ୍କୁ କାମୁଡ଼ିବା ପରିବର୍ତ୍ତେ ତାଙ୍କର ଶାଢ଼ିର ପଣତକୁ କାମୁଡ଼ି ଧରିଲା ଓ ତାଙ୍କୁ ଟାଣି ଟାଣି ଶିଶୁଟିର ନିକଟକୁ ନେଇ ଆସିଲା ।

କୌଣସି ଏକ ରୂପକଥାର କାହାଣୀପରି ଏଇ ଘଟଣାଟି ସେଠାରେ ଉପସ୍ଥିତ ଲୋକଙ୍କ ଆଗରେ ଘଟିଗଲା ।

ସେ ସ୍ଥାନରେ ସମବେତ ଥିବା ଲୋକେ ସମସ୍ୱରରେ କହି ଉଠିଲେ, "ମାଡ଼ାମ୍ ! ଏଇ ଶିଶୁଟି ଆଜିଠାରୁ ଆପଣଙ୍କର ହେଲା । ବୋଧହୁଏ ଆପଣ ଆଉ ଡେରି ନକରି ତାକୁ ସବୁଦିନ ପାଇଁ କୋଳେଇ ନିଅନ୍ତୁ ।"

ଆଉ କୁକୁରଟି ମଧ୍ୟ ସୁମତୀ ଦେବୀଙ୍କ ଆଗରେ ବସି ପଡ଼ି ସଜଳ ଆଖିରେ ଚାହିଁରହିଲା ତାଙ୍କ ମୁହଁକୁ ।

ସୁମତୀ ଦେବୀ ଆଉ ଡେରି କଲେ ନାହିଁ । ସେ ଶିଶୁଟିକୁ ତଳୁ ଉଠାଇ ନିଜ ଘର ଅଭିମୁଖେ ବାହାରିଲେ । କୁକୁରଟି ମଧ୍ୟ ସେ ସ୍ଥାନ ଛାଡ଼ି ପଳେଇ ଯିବାକୁ ବସିଲା । ମାତ୍ର କୁକୁର ପ୍ରତି ଲକ୍ଷ୍ୟକରି ସୁମତୀ ଦେବୀ କହିଲେ, "ଆଉ ତୁ ଏଠାରେ କାହିଁକି ପଡ଼ି ରହିଛୁ । ତୁ ବି ଆଜିଠାରୁ ଆମ ଘରେ ରହିବୁ । ଆଉ ଏଇ ଶିଶୁ ସନ୍ତାନକୁ ସବୁଦିନ ପାଇଁ ନିଜର କରି ରଖିବୁ ।"

ସୁମତୀ ଦେବୀଙ୍କର ଏଇ କଥା କେଇପଦ ସତେ ଯେମିତି କୁକୁରଟି ବୁଝି ପାରିଲା । ସେ ତାଙ୍କ ପଛେ ପଛେ ଚାଲିଲା ।

ସେଦିନର ଏଇ ଘଟଣାଟି ଓ ତା'ର ଦୃଶ୍ୟ ସନ୍ଧ୍ୟାବେଳକୁ ରାଜ୍ୟର ପ୍ରମୁଖ ଟେଲିଭିଜନରେ ପ୍ରସାରିତ ହୋଇଥିଲା । ସମ୍ବାଦଟିକୁ ଜୀବନ୍ତ ଦେଖି

କେହି କେହି ସୁମତୀ ଦେବୀଙ୍କ ଉଦାରତାକୁ ପ୍ରଶଂସା କରୁଥିଲେ । ଆଉ କେତେଜଣ ସେଇ ବୁଲା କୁକୁରର ଜଗୁଆଳି କାମକୁ ମଧ୍ୟ ପ୍ରଶଂସା କରୁଥିଲେ ।

ଚାହୁଁ ଚାହୁଁ ଦିନ କେଇଟାରେ ଏଇ ସଦ୍ୟ ଘଟିଥିବା ଘଟଣାଟି ବାସି ହୋଇଗଲା । ସମସ୍ତଙ୍କ ମନରୁ ଲିଭିଗଲା ।

କିନ୍ତୁ ସାରା ଜୀବନ ପାଇଁ ସୁମତୀ ଦେବୀ ଋଣୀ ରହିଗଲେ ସେଇ ବୁଲା କୁକୁର ପାଖରେ । କାରଣ ସେହିଁ ତାଙ୍କ କୋଳକୁ ଶିଶୁ କନ୍ୟା ସନ୍ତାନଟିକୁ ଅର୍ପଣ କରିଥିଲା । ଆଉ ସବୁଦିନେ ତାଙ୍କ ପାଖରେ ପୁଅଭଳି ରହି ସନ୍ତାନ ଓ ମାତୃତ୍ୱର ମମତା ବନ୍ଧନକୁ ଅତୁଟ ରଖିଥିଲା ।



# ମୁକ୍ତ ରାଜଦରବାର

ଅନେକ ଦିନ ତଳେ ଜଣେ ରାଜା ଥିଲେ । ସେ ସବୁବେଳେ ପ୍ରଜାମାନଙ୍କ ପ୍ରତି ଉଦାର ମନୋଭାବ ପୋଷଣ କରୁଥିଲେ । ସେମାନେ ଅଭାବ ଅସୁବିଧାରେ ପଡ଼ିଲେ ସମସ୍ତ ରାଜଶକ୍ତି ସେମାନଙ୍କୁ ସାହାଯ୍ୟ ସହଯୋଗ କରୁଥିଲେ । ସେଥିପାଇଁ ପ୍ରଜାମାନେ ତାଙ୍କୁ ବହୁତ ଭକ୍ତି କରୁଥିଲେ ।

ଏସବୁ ସତ୍ତ୍ୱେ ରାଜାଙ୍କ ମନରେ ଯଥେଷ୍ଟ ଗର୍ବଥିଲା । କାରଣ ସେ ହେଉଛନ୍ତି ଜଣେ ପ୍ରଜାବତ୍ସଳ ରାଜା । ଯଦି କୌଣସି ପ୍ରଜା କୌଣସି ଅଭାବ ଅସୁବିଧା କଥା ଆସି ରାଜଦରବାରରେ ଜଣାଉଥିଲେ ସେ ମନେ ମନେ ବିରକ୍ତ ହେଉଥିଲେ । ଭାବୁଥିଲେ ଏ ପ୍ରଜାମାନେ ମୋ ଠାରୁ ସବୁ ସୁବିଧା ସୁଯୋଗ ନେଉଛନ୍ତି । ମୋ ମନ୍ତ୍ରୀଙ୍କଠାରୁ ଆରମ୍ଭ କରି ସମସ୍ତ ରାଜକର୍ମଚାରୀ ସେମାନଙ୍କ ହିତରେ ଦିନରାତି କାମ କରୁଛନ୍ତି । ତଥାପି ଅଭାବ, ଅସୁବିଧା ଓ ଅଭିଯୋଗ ।

ଏଇ ଦୃଷ୍ଟିକୋଣରୁ ପ୍ରତିଦିନ ରାଜଦରବାରକୁ ଆସୁଥିବା ପ୍ରଜାମାନଙ୍କୁ ସେ ନିତାନ୍ତ ସୁବିଧାବାଦୀ ବୋଲି ବିଚାର କରୁଥିଲେ । କୌଣସି ପ୍ରଜା ରାଜ୍ୟର ଅଭାବ ଅସୁବିଧା କଥା ଉଠାଇଲା ବେଳେ ସେ ତାଙ୍କ ମନରେ କଷ୍ଟ ଦେଲାଭଳି କଥା କହୁଥିଲେ । ଏପରିକି କେବେ କେବେ ଏଣୁ ତେଣୁ କହି ରାଜଦରବାରରୁ ସେମାନଙ୍କୁ ବାହାରକୁ ବିଦା କରି ଦେଉଥିଲେ ।

ମନ୍ତ୍ରୀମାନେ କେବେ କେବେ ପ୍ରଜାମାନଙ୍କ କଥା ମନଧ୍ୟାନ ଦେଇ ଶୁଣିବାକୁ ରାଜାଙ୍କୁ ପରାମର୍ଶ ଦେଲାବେଳେ ରାଜା ଗର୍ଜି ଉଠି କହୁଥିଲେ, ''ଆପଣମାନେ ହୁଏତ ଜାଣିପାରୁ ନାହାଁନ୍ତି ଯେ ରାଜ ଦରବାରକୁ ଆସୁଥିବା ପ୍ରଜାମାନେ ନିହାତି ସ୍ୱାର୍ଥପର। ସେମାନଙ୍କ ସୁବିଧା ଅସୁବିଧା ବୁଝିବା ପାଇଁ ମୁଁ ସବୁଦିନେ ଆପଣମାନଙ୍କୁ ଦିନରାତି କାମରେ ଲଗାଉଛି। ତଥାପି ଆପଣମାନଙ୍କ ପାଖରେ ହାରିଗୁହାରି ନ କରି ସିଧା ସଳଖ ମୋ ଆଗରେ ଆପତ୍ତି ଅଭିଯୋଗ କରୁଛନ୍ତି। ମୁଁ ଏହା ଆଦୌ ପସନ୍ଦ କରେନାହିଁ।''



ରାଜାଙ୍କର ଏଭଳି ପ୍ରତିକ୍ରିୟା ଶୁଣି ମନ୍ତ୍ରୀମାନେ ନୀରବ ରହିବାକୁ ଶ୍ରେୟ ମନେ କରୁଥିଲେ।

ଚାହୁଁ ଚାହୁଁ ରାଜାଙ୍କର ଏତାଦୃଶ ଆଚରଣ ସଂପର୍କରେ ପ୍ରଜାମାନେ ଜାଣି ପାରିଲେ। ସେମାନେ କେହି ଆଉ ପୂର୍ବବତ୍ ରାଜ ଦରବାରକୁ ଆସି ଆପତ୍ତି ଅଭିଯୋଗ କରି ଅପମାନିତ ହେବାକୁ ଚାହିଁଲେ ନାହିଁ



କ୍ରମଶଃ ରାଜାଙ୍କର ଦାମ୍ଭିକପଣ ଅସମ୍ମାନଜନକ କଥାରେ ମଧ୍ୟ ମନ୍ତ୍ରୀମାନେ ବିରକ୍ତ ହେଲେ । ପ୍ରଧାନମନ୍ତ୍ରୀ ମଧ୍ୟ ଯଥାଯଥ ଭାବେ ରାଜ୍ୟର ପ୍ରଶାସନିକ ଖବର ରାଜାଙ୍କୁ ଦେବାକୁ ଉଚିତ୍ ମନେ କଲେନାହିଁ ।

ଏମିତି କିଛି ଦିନ ବିତିଗଲା ।

ରାଜା ଦିନେ ପ୍ରଧାନମନ୍ତ୍ରୀଙ୍କୁ ରାଜଦରବାରରେ ପଚାରିଲେ, ''ମନ୍ତ୍ରୀବର ! ମୁଁ ବିଶେଷ ଖୁସି ଯେ ମୋ ରାଜ୍ୟର ପ୍ରଜାମାନେ ମୋ ଶାସନ କାଳରେ ସୁଖ ଶାନ୍ତିରେ ଅଛନ୍ତି । ଏବେ କାହାରି କୌଣସି ଆପତ୍ତି ଅଭିଯୋଗ ନାହିଁ ।''

ପ୍ରଧାନମନ୍ତ୍ରୀ କହିଲେ, ''ମହାରାଜା ଆପଣଙ୍କ ପାଖକୁ କ'ଣ ଏ ସଂପର୍କରେ କୌଣସି ଗୁପ୍ତ ସମ୍ବାଦ ଆସିଛି ?''

ମନ୍ତ୍ରୀଙ୍କ କଥାଶୁଣି ରାଜା ଖୁବ୍ ଜୋରରେ ହସିଲେ । କହିଲେ, ''ଗୁପ୍ତଚର କ'ଣ ଏଇ ଛୋଟିଆ ଖବର ପାଇଁ ସମୟ ନଷ୍ଟ କରିବେ ?''

''ତେବେ ଆପଣ ଜାଣିଲେ କେମିତି ?''

ମନ୍ତ୍ରୀ ସାହସର ସହିତ ପଚାରିଲେ ।

ରାଜା ହସି ହସି କହିଲେ, ''ଏବେ ମୋ ଦରବାରକୁ କେହି ଜଣେ ହେଲେ ପ୍ରଜା ମଧ୍ୟ ଆପତ୍ତି ଅଭିଯୋଗ କରିବାକୁ ଆସୁ ନାହାଁନ୍ତି । ଏହା କ'ଣ ମୋ ଅନୁମାନର ବଳିଷ୍ଠ ପ୍ରମାଣ ନୁହଁ ?''

ମନ୍ତ୍ରୀ ରାଜାଙ୍କ କଥା ଶୁଣି ନୀରବ ରହିଲେ । ମନେ ମନେ ଭାବିଲେ, ''ନିଜର କାର୍ଯ୍ୟଧାରା ଉପରେ ଅଧିକ ଆସ୍ଥା ରଖିଥିବା ଦାମ୍ଭିକ ରାଜାଙ୍କୁ ବା ସେ କେମିତି ବୁଝାଇବେ ।'' ତଥାପି କିଛିକ୍ଷଣ ଚିନ୍ତାକରି ପ୍ରଧାନମନ୍ତ୍ରୀ କହିଲେ, ''ମହାରାଜ ! ଆପଣ ଅନେକ ବର୍ଷହେଲା ଛଦ୍ମବେଶରେ ରାଜ୍ୟ ବୁଲି ପ୍ରଜାମାନଙ୍କ ଭଲମନ୍ଦ ସ୍ୱଚକ୍ଷୁରେ ଦେଖି ନାହାଁନ୍ତି । ଥରେ ଆପଣ ଘୁରିବୁଲି ଆସନ୍ତୁ । ପ୍ରଜାମାନଙ୍କ ଅବସ୍ଥା ଦେଖି

ଆସନ୍ତୁ । ଯଦି ରାଜକର୍ମଚାରୀମାନଙ୍କ କର୍ତ୍ତବ୍ୟରେ କିଛି ଅସୁବିଧା ଥିବ ତାହା ମଧ୍ୟ ସେମାନେ ଅତି ସହଜରେ ସୁଧାରି ନେବେ ।''

ପ୍ରଧାନମନ୍ତ୍ରୀଙ୍କର ଏ ପ୍ରସ୍ତାବ ରାଜାଙ୍କ ପ୍ରତି ସ୍ୱାଗତଯୋଗ୍ୟ ଥିଲା । ତେଣୁ ସେ ହସି ହସି କହିଲେ, ''ଆସନ୍ତା କାଲିଠାରୁ ମୁଁ ଏକ ସପ୍ତାହ ପାଇଁ ଛଦ୍ମବେଶରେ ରାଜ୍ୟ ପରିକ୍ରମା କରିବି । ସେ ସମୟରେ ଆପଣ ରାଜକାର୍ଯ୍ୟ ତୁଲାଇବେ ।''

ମନ୍ତ୍ରୀ ରାଜାଙ୍କ ପ୍ରସ୍ତାବରେ ସମ୍ମତ ହେଲେ ।

ରାଜା ପରଦିନ ପ୍ରଥମେ ନିଜେ ରହୁଥିବା ରାଜ୍ୟର ରାଜଧାନୀ ବୁଲି ଦେଖିବା ନିମନ୍ତେ ରାଜପ୍ରାସାଦ ଛାଡ଼ି ବାହାରିଲେ ।

କୁହାଯାଏ; ଗାଁ ପରିମଳ ଗାଆଁ ପୋଖରୀର ତୁଠରୁ ଜଣାପଡ଼େ ।

ରାଜା ଲକ୍ଷ୍ୟକଲେ ରାଜଧାନୀର ଏକ ଗଳି ରାସ୍ତାଦେଇ ସହରର ଦୈନନ୍ଦିନ ଆବର୍ଜନା ପାଣି ଯାଉଛି । ସେଇ ମଇଳା ପାଣିରେ ପଶି ପ୍ରଜାମାନେ ଯିବାଆସିବା କରୁଛନ୍ତି । ପାଠ ପଢ଼ିବାକୁ ଯାଉଥିବା ସ୍କୁଲ ପିଲାମାନଙ୍କ ଦେହରେ ଛିଟିକା ପାଣି ପଡ଼ି ସେମାନଙ୍କ ପୋଷାକପତ୍ର ମଇଳା ହେଉଛି । ନିଜ ରାଜ୍ୟ ରାଜଧାନୀର ଏକ ଦୟନୀୟ ଅବସ୍ଥା ଦେଖି ରାଜାଙ୍କ ମନରେ ଯେତିକି ଦୁଃଖ ଆସିଲା ସେତିକି କ୍ରୋଧ ମଧ୍ୟ ଆସିଲା ।

ରାଜା ସେ ରାସ୍ତାରେ ଯାଉଥିବା ଦୁଇଜଣ ସ୍କୁଲ ପିଲାଙ୍କ ନିକଟକୁ ଗଲେ । ସେ ସେମାନଙ୍କୁ ହସି ହସି ପଚାରିଲେ, ''ପିଲାମାନେ ! ଏପରି ରାସ୍ତାରେ ଯାଉଥିବା ହେତୁ ତୁମ୍ଭମାନଙ୍କର ବିଶେଷ ଅସୁବିଧା ହେଉଛି କି ?''

ଜଣେ ସ୍କୁଲ ପିଲା କହିଲା, ''ଆମ ଅସୁବିଧା କଥା କିଏ ପଚାରେ ? ଦିନେ ଏଇ ଗଳି ରାସ୍ତାରେ ପାଣିରେ ମୋ ଗୋଡ଼ ଖସିଗଲା । ମୁଁ ପଡ଼ିଗଲି । ଘରେ ଯାଇଁ ବାପାଙ୍କୁ କହିଲି, ''ବାପା ! ଏ ରାସ୍ତାକୁ କ'ଣ ମରାମତି କରି ହେବନାହିଁ ?''

''ତୁମ ବାପା କ'ଣ କହିଲେ ?'' ଛଦ୍ମବେଶୀ ରାଜା ପଚାରିଲେ ।

ବାପା କହିଲେ, ''ହେବ ନାହିଁ କାହିଁକି ? ଆମ ମହାନୁଭବ ରାଜା ଚାହିଁଲେ କେବଳ ଏଇ ଗଳି ରାସ୍ତା କାହିଁକି, ଆମ ରାଜ୍ୟର ସବୁ ରାସ୍ତା ମଧ୍ୟ ସଜଡ଼ା ହୋଇପାରିବ ।''

''ତା'ପରେ ତୁମେ ତୁମ ବାପାଙ୍କୁ କ'ଣ କହିଲ ?'' ଆଗ୍ରହର ସହିତ ଛଦ୍ମବେଶୀ ରାଜା ପଚାରିଲେ ।

ପିଲାଟି କହିଲା, ''ତୁମେ କାହିଁକି ଏଇ କଥା କୌଣସି ରାଜ କର୍ମଚାରୀ କିମ୍ବା ରାଜାଙ୍କୁ କହୁନାହଁ ?

ମୋ କଥା ଶୁଣି ବାପା କିଛି ସମୟ ନୀରବ ରହିଲେ ! ମୋର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଆରମ୍ଭ କଲେ, ''ମୁଁ ଏଇ କଥା ଜଣେ ରାଜକର୍ମଚାରୀଙ୍କ ଦୃଷ୍ଟିକୁ ଆଣିଥିଲି । ସେ ମୋର କଥା ଶୁଣି କହିଥିଲେ ଯେ ଏଇ କାମ ପାଇଁ ଅଧିକ ଅର୍ଥର ଆବଶ୍ୟକତା ରହିବ । ସେଥିପାଇଁ ରାଜ୍ୟର ବଜେଟରେ ସ୍ଥାନ ପାଇବା ଦରକାର । କିନ୍ତୁ ଏ କଥା ରାଜାଙ୍କ ଦୃଷ୍ଟିକୁ ଆଣିବ କିଏ ?''

''ତା'ପରେ ବାପା ପୁଣି କ'ଣ କହିଲେ ?''

ଛଦ୍ମବେଶୀ ରାଜା ପିଲାଟିକୁ ପଚାରିଲେ । ପିଲାଟି ହସି ହସି କହିଲା, ''ବାପା କହିଲେ, ଆମ ରାଜା ଖୁବ୍ ଭଲ ମଣିଷ । ସେ ପ୍ରଜାମାନଙ୍କୁ ମଧ୍ୟ ନିଜ ପ୍ରାଣଠାରୁ ଅଧିକ ଭଲ ପାଆନ୍ତି । କିନ୍ତୁ ଏବେ ସିଏ ଟିକିଏ ବଦରାଗି ହୋଇ ଯାଇଛନ୍ତି । କୌଣସି ଆପତ୍ତି ଅଭିଯୋଗ ନେଇ ରାଜାଙ୍କ ପାଖକୁ କେହି ଗଲେ ସେ ତାଙ୍କ ଉପରେ ବିରକ୍ତ ହେଉଛନ୍ତି । ତାଙ୍କର ରାଜ କର୍ମଚାରୀମାନଙ୍କ ଉପରେ ଅହେତୁକ ବିଶ୍ୱାସ ଅଛି । ରାଜ୍ୟରେ କୌଣସି ଅଭାବ ଅସୁବିଧା ନାହିଁ ବୋଲି ସେ ଭାବିନିଅନ୍ତି । ଅଭାବ ଅସୁବିଧା ଦର୍ଶାଉଥିବା ପ୍ରଜାଙ୍କୁ ସେ ଅତି କଠୋର କଥା କହି ରାଜଦରବାରରୁ ବିଦା କରି ଦିଅନ୍ତି ।''

ବାସ୍! ପିଲାଟିର ଏଇ କଥାକେଇପଦ ପ୍ରଜାଙ୍କ ସଂକୁଚିତ ଚିନ୍ତାଧାରାକୁ ବଦଳାଇ ଦେଲା। ନିଜର ଶାସନକୁ ଲୋକାଭିମୁଖୀ କରି ନଥିବା ହେତୁ ସେ ମନେ ମନେ ଲଜ୍ଜିତ ହେଲେ।

ବେଶୀ ବୁଲି ରାଜ୍ୟର ଅବସ୍ଥା ଦେଖିବାକୁ ରାଜା ଆଉ ପସନ୍ଦ କଲେନାହିଁ। ତେଣୁ ସେ ସେଠାରୁ ସିଧାସିଧା ରାଜପ୍ରାସାଦକୁ ଚାଲି ଆସିଲେ। ରାତାରାତି ସ୍କୁଲ ପିଲାମାନଙ୍କର ଅସୁବିଧା ନିରାକରଣ ନିମନ୍ତେ ଗଳି ରାସ୍ତାଟିକୁ ତିଆରି କରାଗଲା।

ତା'ପରଦିନ ରାଜ୍ୟର ଚାରିଆଡ଼େ ଢେଙ୍ଗୁରା ପିଟାଗଲା। ପ୍ରଜାମାନଙ୍କୁ ଜଣାଇ ଦିଆଗଲା ଯେ ଏଣିକି ପ୍ରତ୍ୟେକ ନାଗରିକ ପୂର୍ବପରି ସେମାନଙ୍କ ଆପତ୍ତି ଅଭିଯୋଗ ରାଜ ଦରବାରରେ ଜଣାଇବେ। ରାଜାଙ୍କ ଅଭିଯୋଗ ଶୁଣାଣି ହେବ ମୁକ୍ତ ଓ ଖୋଲାଖୋଲି ଭାବରେ। ସେ ସେଇସବୁ ଅଭିଯୋଗ ଧର୍ଯ୍ୟର ସହିତ ଶୁଣିବେ। ତଦନୁଯାୟୀ ଆବଶ୍ୟକ ପଦକ୍ଷେପ ନେବେ।

ଚାହୁଁ ଚାହୁଁ ଅଳ୍ପ କେତେବର୍ଷ ମଧରେ ରାଜାଙ୍କ ଦରବାରର 'ମୁକ୍ତ ବିଚାର' ଅନ୍ୟ ରାଜ୍ୟର ଆଦର୍ଶ ଓ ପରମ୍ପରା ହୋଇଗଲା।

ଢେଙ୍ଗୁରା ପିଟାର ପରଦିନଠାରୁ ରାଜ ଦରବାରରେ ଏମିତି ଭିଡ଼ ଲାଗିଲା ଯେ ରାଜା ଖାଇବା ପିଇବା କଥା ମଧ୍ୟ ଭୁଲିଗଲେ।

ସବୁଠାରୁ ବଡ଼ କଥା ହେଲା ରାଜ ଦରବାରରେ ଉପସ୍ଥିତ ସର୍ବଶେଷ ଲୋକଟିର ଅଭିଯୋଗ ଶୁଣିବା ପର୍ଯ୍ୟନ୍ତ ରାଜଦରବାରର ଅଭିଯୋଗ ପ୍ରକୋଷ୍ଠ ପ୍ରଜାମାନଙ୍କ ପାଇଁ ଖୋଲା ରହିଲା।

ଆଉ ଧର୍ଯ୍ୟର ସହିତ ପ୍ରଜାବତ୍ସଳ ରାଜାଜଣକ ପ୍ରଜାମାନଙ୍କ ସମସ୍ୟାର ସମାଧାନ କରିବାରେ ଲାଗିପଡ଼ିଲେ।



# ଯେମିତି କିଛି ଘଟିନାହିଁ

ସେ ବର୍ଷ ମୁଁ ସ୍ୱାଧୀନ ନଗର ଉଚ୍ଚ ବିଦ୍ୟାଳୟରେ ନୂଆକରି ଶିକ୍ଷକ ରୂପେ ଯୋଗଦାନ କରିଥାଏ । ଯୋଗଦାନ ସମୟରେ ମୋର ସମସ୍ତ ପ୍ରମାଣପତ୍ର ଓ ଆଦେଶ ପତ୍ର ଦେଖି ପ୍ରଧାନ ଶିକ୍ଷକ ମହୋଦୟ କହିଲେ, ‘‘ଆପଣଙ୍କ ଭଳି ଜଣେ ଯୋଗ୍ୟତାସଂପନ୍ନ ଶିକ୍ଷକ ଆମ ବିଦ୍ୟାଳୟ ପାଇଁ ଦରକାର ଥିଲା । ଆପଣ ଆସିଗଲେ । ଖୁବ୍ ଭଲ ହେଲା । ହେଲେ.....’’

‘ହେଲେ କ’ଣ’, ମୁଁ ପଚାରିଲି ।

ପ୍ରଧାନ ଶିକ୍ଷକ ମହୋଦୟ ହସି ହସି କହିଲେ, ‘‘ମୋ ବିଦ୍ୟାଳୟର ଯେମିତି ଶାନ୍ତଶିଷ୍ଟ ସୁଧାର ପିଲାମାନେ ଅଛନ୍ତି; ସେମିତି କେତେକ ଦୁଃଷ୍ଟ ପିଲା ମଧ୍ୟ ଅଛନ୍ତି । କିନ୍ତୁ ଦୁଃଷ୍ଟ ପିଲାମାନଙ୍କର ମାନସିକ ସ୍ଥିତି ଦେଖି ସେମାନଙ୍କୁ ଭଲବାଟକୁ ଆଣିବାକୁ ଶିକ୍ଷକମାନେ ଚେଷ୍ଟା କରୁନାହାଁନ୍ତି । ସେମାନେ ମୋର ଇଚ୍ଛା ବିରୋଧରେ କଥା କଥାକେ ପିଲାମାନଙ୍କୁ ଦଣ୍ଡ ଦେଉଛନ୍ତି । ତାହା ଦେଖି ମୋତେ ବଡ଼ ଖରାପ ଲାଗୁଛି । ଅନେକ ସମୟରେ ମୋର ସୁଚିନ୍ତିତ ପରାମର୍ଶକୁ ମଧ୍ୟ ସେମାନେ ଅଣଦେଖା କରୁଛନ୍ତି ।’’

ବିଜ୍ଞ ପ୍ରଧାନ ଶିକ୍ଷକ ଜଣକ କ’ଣ କହୁଛନ୍ତି, ତାହା ବୁଝିବାକୁ ମୋତେ ଆଉ ଡେରି ଲାଗିଲା ନାହିଁ ।

ମୁଁ ଆତ୍ମବିଶ୍ୱାସ ସହିତ କହିଲି, ‘‘ସାର୍! ଆପଣଙ୍କ ଗଠନ ମୂଳକ ପରାମର୍ଶ ମୋର ମନେ ରହିଲା । ମୁଁ ମୋ ଶୈକ୍ଷିକ କାର୍ଯ୍ୟଧାରାରେ ଦୁଃଷ୍ଟ ପିଲାମାନଙ୍କୁ ଶିଷ୍ଟ କରିବାକୁ ଚେଷ୍ଟା କରିବି । ସବୁ ପିଲାମାନଙ୍କୁ ସମାନ ଦୃଷ୍ଟିରେ ଦେଖି ବିଦ୍ୟାଳୟର ସୁସ୍ଥ ପରମ୍ପରାର ସହାୟକ ହେବି ।’’

ମୋ କଥା ଶୁଣି ପ୍ରଧାନ ଶିକ୍ଷକ ମହୋଦୟ କହିଲେ, ‘‘ମୁଁ ଆପଣଙ୍କଠାରୁ ଠିକ୍ ଏଇ ଉତ୍ତର ଆଶା କରୁଥିଲି ।’’

ଏହା କହି ସେ ଶିକ୍ଷକଉପସ୍ଥାନ ଖାତାରେ ମୋର ନାମ ଲେଖିଦେଲେ ।

ମୁଁ ଉପସ୍ଥାନ ଖାତାରେ ଉଦ୍ଦିଷ୍ଟ ସ୍ଥାନରେ ମୋର ଦସ୍ତଖତ କଲି ।

ସେଦିନ ଅତି ସୁରୁଖୁରୁରେ ସ୍ୱାଧୀନ ନଗର ଉଚ୍ଚ ବିଦ୍ୟାଳୟରେ ମୋର ଯୋଗଦାନ ହୋଇଗଲା ।

ଯୋଗଦାନ ପରଦିନ ବିଦ୍ୟାଳୟ ଆରମ୍ଭ ହେବାର ଅଧଘଣ୍ଟା ପୂର୍ବରୁ ମୁଁ ପହଞ୍ଚିଗଲି । ଦେଖିଲି ପ୍ରଧାନ ଶିକ୍ଷକଙ୍କ ଅଫିସ୍ ଖୋଲାଅଛି । ମାତ୍ର ସେ ଆସି ନାହାଁନ୍ତି । ଜଣେ ବୟସ୍କ ଶିକ୍ଷକ ଏକ ନୂତନ ରୁଟିନ୍ ତିଆରି କରି ପ୍ରଧାନ ଶିକ୍ଷକଙ୍କ ଟେବୁଲ ଆଗରେ ବସିଛନ୍ତି । ମୋତେ ଦେଖି ସେ ସଙ୍ଗେ ସଙ୍ଗେ କହିଲେ, ‘‘ମହାକୁଳ ବାବୁ! ଆପଣ ନୂତନଭାବେ ଯୋଗଦାନ କରିଥିବା ହେତୁ ଆପଣଙ୍କ ଶିକ୍ଷାଗତ ଯୋଗ୍ୟତା ଦେଖି ଏକ ନୂତନ ରୁଟିନ୍ ତିଆରି କରିବାକୁ ମୋତେ ପ୍ରଧାନ ଶିକ୍ଷକ ମହାଶୟ କହିଥିଲେ । ପ୍ରଧାନ ଶିକ୍ଷକଙ୍କ ପରାମର୍ଶ କ୍ରମେ ଆପଣଙ୍କୁ ଅଷ୍ଟମ ଶ୍ରେଣୀର ଶ୍ରେଣୀଶିକ୍ଷକ କରାଯାଇଅଛି । ଆପଣ ଆଜି ବିଦ୍ୟାଳୟର ପ୍ରାର୍ଥନା କାର୍ଯ୍ୟକ୍ରମ ସରିଲା ପରେ ଅଷ୍ଟମ ଶ୍ରେଣୀର ଉପସ୍ଥାନ ଖାତା ନେଇ ପ୍ରଥମ ପିରିୟଡ଼ରେ ସେ ଶ୍ରେଣୀକୁ ଯିବେ । ଇତି ମଧ୍ୟରେ ଆପଣଙ୍କ ସାପ୍ତାହିକ ରୁଟିନ୍‌କୁ ମଧ୍ୟ ଟିପି ନେବେ ।’’

କିଛି ସମୟ ନୀରବ ରହି ରୁଟିନ୍ କରିଥିବା ସହକାରୀ ପ୍ରଧାନ ଶିକ୍ଷକ ଜଣକ କହିଲେ, ''ମହାକୁଳ ବାବୁ! ଅଷ୍ଟମ ଶ୍ରେଣୀରେ ତୋଫାନ [illegible] [illegible] [illegible] ପିଲା ପଢୁଛି । ତା'ର ସାଙ୍ଗମାନେ ଏଇ ବିଦ୍ୟାଳୟରୁ ମାଧ୍ୟମିକ ଶିକ୍ଷା ସାରି ନିକଟସ୍ଥ କଲେଜରେ ପଢୁଛନ୍ତି । ମାତ୍ର ସେ ଭଲ ପଢୁ ନଥିବାରୁ ସେମିତି ଅଷ୍ଟମ ଶ୍ରେଣୀରେ ପଡ଼ି ରହିଛି । ଅବଶ୍ୟ ସେ ପ୍ରତିବର୍ଷ ସେ ଶ୍ରେଣୀରେ ନୂଆ ପଢ଼ିବାକୁ ଆସିଥିବା ତା'ଠାରୁ ବୟସରେ ସାନ ପିଲାମାନଙ୍କୁ ମଧ୍ୟ କିଛି ଖରାପ ବ୍ୟବହାର କରୁନାହିଁ । ଆପଣ ତାହା ସହିତ ଟିକିଏ ଜଗି ରଖି ଚଳିବେ ।''

ସହକାରୀ ପ୍ରଧାନ ଶିକ୍ଷକଙ୍କ କଥା ମୋତେ ଟିକିଏ ଅଡୁଆ ଅଡୁଆ ଲାଗିଲା । ଶିକ୍ଷକ ହୋଇ ଜଣେ ପିଲାକୁ ପୁଣି ଜଗିରଖି ଚଳିବି - ଏକଥାର ତାତ୍ପର୍ଯ୍ୟ କ'ଣ ମୁଁ ସହଜରେ ବୁଝିପାରିଲି ନାହିଁ ।

ଯାହା ହେଉ ଶ୍ରେଣୀ ଶିକ୍ଷକ ହୋଇଥିବା ହେତୁ ମୋର ଅଷ୍ଟମ ଶ୍ରେଣୀ ପିଲାମାନଙ୍କ ଉପରେ ବିଶେଷ ନଜର ରହିଲା । ଖାଲି ପାଠ ପଢ଼ାଇବା ଜଣେ ଶିକ୍ଷକଙ୍କର ନ୍ୟୂନତମ କାର୍ଯ୍ୟବୋଲି ମୁଁ ଶିକ୍ଷକ ପ୍ରଶିକ୍ଷଣ ପାଇଲାବେଳେ ଜାଣିଥିଲି । ତେଣୁ ପିଲାମାନଙ୍କର ଶାରୀରିକ, ମାନସିକ, ବୌଦ୍ଧିକ, ବିକାଶ ଆଦି କିପରି ଘଟିବ; ସେ ଦିଗରେ ମନ ଦେଲି ।

ଅଳ୍ପଦିନ ମଧ୍ୟରେ ଶ୍ରେଣୀର ସମସ୍ତ ପିଲା ମୋତେ ଅତି ସହଜରେ ଗ୍ରହଣ କରିନେଲେ । ତୋଫାନ ମଧ୍ୟ । ଯେହେତୁ ତୋଫାନର ଅଷ୍ଟମ ଶ୍ରେଣୀ ସମକକ୍ଷ ଜ୍ଞାନ ନଥିଲା; ସେ ପାରିଲା ଭଳି ତାକୁ ସ୍ୱତନ୍ତ୍ର ପାଠ ଦେଲି । ସେ ସେହିସବୁ ପାଠକୁ ବୁଝିଲା ଓ ଅତି ସହଜରେ କରିପାରିଲା । ସେଥିପାଇଁ ତା'ମନରେ ମଧ୍ୟ ଆନନ୍ଦ ଥିଲା ।

କ୍ରମଶଃ ମୁଁ ଲକ୍ଷ୍ୟକଲି ତୋଫାନ ମଧ୍ୟରେ ଆତ୍ମପ୍ରତ୍ୟୟ ସୃଷ୍ଟି ହୋଇଅଛି । ଇତି ମଧ୍ୟରେ ସେ ତା'ର ପାଠ ପଢ଼ାରେ ମଧ୍ୟ ଅନେକ ଅଗ୍ରଗତି କରିଅଛି । ଦିନେ ଗଣିତ ଶ୍ରେଣୀରେ ଜଣେ ଶିକ୍ଷକଙ୍କ ଉପରକୁ ଡିଭାଇଡର

ଫୋପାଡ଼ିଥିବା ସେହି ଦୁଷ୍ଟ ପିଲା ଜଣକ ଯେ ତୋଫାନ; ଏକଥା ମୁଁ ବିଶ୍ୱାସ କରିପାରିଲି ନାହିଁ। ତା'ର କୌଣସି ଆଚରଣରେ କେବେ ଦୁଷ୍ଟାମିର ଛାପ ମୁଁ ଦେଖିବାକୁ ପାଇଲି ନାହିଁ।

ଦିନକର ଘଟଣା।

ସେଦିନ ମଧ୍ୟାହ୍ନ ବିରତି ପରେ ପରେ ମୁଁ ଅଷ୍ଟମ ଶ୍ରେଣୀକୁ ଇଂରାଜୀ ପଢ଼ାଇବାକୁ ଯାଉଥାଏ। ଏଇ ସମୟରେ ଜଣେ ପିଲା ଆସି ମୋ ଆଗରେ ଫେରାଦ ହେଲା, ''ସାର୍! ମୋତେ ଆଜି ରିସେସ୍ ସମୟରେ ଜଗୁ ସିଗାରେଟ୍ ଖାଇବାକୁ ବାଧ୍ୟ କଲା। ମୁଁ ତା' କଥା ନ ମାନିବାରୁ ସେ ମୋତେ ମାରଧର କଲା।''

ମୁଁ ପିଲାଟିର ଅଭିଯୋଗକୁ ନୈତିକ ଦୃଷ୍ଟିକୋଣରୁ ଅତି ସହଜରେ ଗ୍ରହଣ କରି ନେଲି। କହିଲି, ''ଯାଅ, ଜଗୁକୁ ଡାକି ଆଣ। ତୁମ ଅଭିଯୋଗର ବିଚାର ହେବ।''

ସେ ପିଲାଟି ଚାଲିଗଲା।

କିଛି ସମୟ ପରେ ଜଗୁ ଆସି ପହଞ୍ଚିଲା।

ମୁଁ ପଚାରିଲି, ''ଜଗୁ! ପିଲାଟି ତୁମ ନାମରେ ଯାହା କହୁଛି ତାହା କ'ଣ ସତ?''

ଜଗୁ ସିଧା ସିଧା କହିଲା, ''ହଁ ସାର୍, ସେ ଯାହା କହୁଛି ସତ। ମୁଁ ତାକୁ ସିଗାରେଟ୍ ଖାଇବାକୁ ବାଧ୍ୟ କରିଥିଲି। ସେ ନ ଖାଇବାରୁ ତା'ପିଠିରେ ମଧ୍ୟ ଏକ ଶକ୍ତ ବିଧା ଦେଇଥିଲି।''

ଏହା ବିଦ୍ୟାଳୟ ପରିସର ମଧ୍ୟରେ ଚାରିତ୍ରିକ ସ୍ଖଳନର ଏକ ନମୂନା ଥିଲା। ତେଣୁ ମୋର ଦଣ୍ଡକୁ ଅନ୍ୟମାନଙ୍କ ପାଇଁ ଏକ ଉଦାହରଣ କରିବା ନିମନ୍ତେ ଜଗୁ ପିଠିରେ ଦୁଇ ପାହାର ଦେଇ କହିଲି, ''ତୁମେ କିମ୍ବା ଆଉ କିଏ ଭବିଷ୍ୟତରେ ଏପରି କାର୍ଯ୍ୟ କରିବ ନାହିଁ।''

ଜଗୁ ଦଣ୍ଡପାଇ ସେଠାରୁ ଚାଲିଗଲା । ମୋର ଧାରଣା ହେଲା ଯେ ମୋ ଦଣ୍ଡକୁ ସ୍ୱାଭାବିକ ଭାବେ ଗ୍ରହଣ କରି ନେଇଛି ।

ତା'ପର ଦିନର ଘଟଣା । ମୁଁ ପ୍ରଥମ ପିରିୟଡ଼ରେ ଅଷ୍ଟମ ଶ୍ରେଣୀରେ ଇଂରାଜୀ ପଢ଼ାଉଛି । ଏଇ ସମୟରେ ଜଣେ ଧୋତି ଓ ପଞ୍ଜାବୀ ପିନ୍ଧା ବାବୁ ମୋତେ ଡାକିଲେ । କହିଲେ, ''ସାର୍ ! ଆପଣ ଟିକେ ବାହାରକୁ ଆସନ୍ତୁ ।''

ମୁଁ ସେ ଭଦ୍ର ବ୍ୟକ୍ତିଙ୍କୁ ଆଗରୁ ଚିହ୍ନି ନଥିଲି । କୌଣସି କାମରେ ଆସିଛନ୍ତି ବୋଲି ଭାବି ପଦାକୁ ଆସିଲି ।

ମୁଁ ଶ୍ରେଣୀଗୃହରୁ ଯେମିତି ପଦାକୁ ବାହାରିଛି, ଭଦ୍ରବ୍ୟକ୍ତି ଜଣକ ସଙ୍ଗେ ସଙ୍ଗେ ମୋ ଉପରେ ଚଢ଼ଉ କରିଦେଲେ । ପଚାରିଲେ, ''ଆପଣ ଗତ କାଲି କାହିଁକି ମୋ ପିଲାକୁ ବାଡ଼େଇଲେ ?''

ମୁଁ ଗତକାଲି ଘଟିଥିବା ଘଟଣାକୁ ସଂପୂର୍ଣ୍ଣଭାବେ ଭୁଲି ଯାଇଥିଲି ।

ମୋତେ ପ୍ରଶ୍ନ ପଚାରୁଥିବା ଭଦ୍ରବ୍ୟକ୍ତି ଜଣକ ଯେ ଜଗୁର ବାପା, ତାହା ବୁଝିବାକୁ ଡେରି ଲାଗିଲା ନାହିଁ ।

ମୁଁ ଶାନ୍ତ ଭାବେ ପଚାରିଲି, ''ଜଗୁ କ'ଣ ଘରେ କିଛି କହିଥିଲା ?''

ସେ ସଙ୍ଗେ ସଙ୍ଗେ କହିଲେ, ''ସେ କାହିଁକି କହିବ ? ମୋର କ'ଣ କିଛି ଆତ୍ମସମ୍ମାନ ନାହିଁ ?''

ମୁଁ ଲକ୍ଷ୍ୟକଲି ଜଗୁର ବାପା ମୋ ଉପରେ ବହୁତ ରାଗିଛନ୍ତି । ମୁଁ ନିଜସ୍ୱ ପକ୍ଷ ରଖିବାକୁ ଯାଇ ତାଙ୍କୁ କହିଲେ, ''ଦେଖନ୍ତୁ, ଆପଣଙ୍କ ପୁଅ ରିସେସ୍ ସମୟରେ ସମସ୍ତଙ୍କ ଆଗରେ ପିଲାଟିକୁ ସିଗାରେଟ୍ ଖାଇବାକୁ ବାଧ କଲା । ତାକୁ ମଧ ମାରଧର କଲା । ମୁଁ ପଚାରିବାରୁ ସେ ତା'ର ଦୋଷ ମାନିଲା । ତାକୁ କେବଳ ତାଗିଦ୍ କରିବା ପାଇଁ..... ।''



ଜଗୁର ବାପା ମୋ କଥା ଶୁଣି ନୀରବ ରହିବା ପରିବର୍ତ୍ତେ ମୋ ଉପରେ ଭୀଷଣ ରାଗିଗଲେ । ମୋତେ ଲକ୍ଷ୍ୟକରି କହିଲେ, ''ଆପଣ ଦଣ୍ଡ ଦେବା ପୂର୍ବରୁ ମନେ ରଖିବା ଉଚିତ୍ ଥିଲା ଯେ ସେ ଜଣେ ସିନିୟର ପିଲା । ନବମ ଶ୍ରେଣୀରେ ପଢ଼େ । ଆପଣ ଜଣେ ନବମ ଶ୍ରେଣୀର ପିଲାକୁ ତା'ର ଜୁନିୟର ଅଷ୍ଟମ ଶ୍ରେଣୀ ପିଲାଙ୍କ ଆଗରେ ଦଣ୍ଡ ଦେଇ ଅପମାନିତ କରିବା କ'ଣ ଠିକ୍ ଥିଲା ?''

ମୁଁ ଦେଖିଲି ଭଦ୍ରବ୍ୟକ୍ତି ଜଣଙ୍କର ଚିନ୍ତାଧାରା ଯାହା ତାଙ୍କୁ ଆଉ ବୁଝେଇ ହେବନାହିଁ । ଅଯଥା ତାଙ୍କ ସହିତ ଯୁକ୍ତିତର୍କ କଲେ କାଳେ ଅପ୍ରୀତିକର ପରିସ୍ଥିତି ଉପୁଯିବ, ସେଥିପାଇଁ ମୁଁ ତାଙ୍କୁ ନମ୍ରଭାବରେ କହିଲି, ''ମୋର ଶ୍ରେଣୀରେ ଶିକ୍ଷାଦାନ ଦେବାରେ ବାଧା ଉପୁଜୁଛି । ମୋତେ ଚାହିଁ ରହିଥିବା ପିଲାମାନଙ୍କର ମଧ୍ୟ ସମୟ ନଷ୍ଟ ହେଉଅଛି । ମୋ ବିରୋଧରେ ଯାହା ଅଭିଯୋଗ ଅଛି ଆପଣ ସିଧା ସିଧା ପ୍ରଧାନ ଶିକ୍ଷକଙ୍କୁ କହନ୍ତୁ ।''

ମୋ କଥାରେ ଅସହାୟତା ଥିଲା । ଆମ ଦୁଇଜଣଙ୍କର କଥାବାର୍ତ୍ତା ମଧ୍ୟ ଅଷ୍ଟମ ଶ୍ରେଣୀର ସବୁ ପିଲା ଶୁଣୁଥିଲେ । ସେମାନେ ବୋଧହୁଏ ଭାବୁଥିଲେ ମୋ ପରାମର୍ଶ ଅନୁଯାୟୀ ଭଦ୍ରବ୍ୟକ୍ତି ଜଣକ ସେଠାରୁ

ଚାଲିଯିବେ । ମାତ୍ର ତାହା ହେଲା ନାହିଁ । ଭଦ୍ରବ୍ୟକ୍ତି ଜଣକ ପୁଣି ପାଟିକରି ତାଙ୍କ ପୁଅର ସମ୍ମାନ କଥା ଉଠାଇଲେ । ସେ ବୋଧହୁଏ ଚାହୁଁଥିଲେ ମୁଁ ଯେମିତି ତାଙ୍କ ପାଖରେ ଭୁଲ ମାଗେ ।

ତାଙ୍କର ଗର୍ଜନ ତର୍ଜନ ଶୁଣି ଶ୍ରେଣୀର ଜଣେ ପିଲା ହଠାତ୍ ଉଠିପଡ଼ି ଜୋରରେ ଭଦ୍ରବ୍ୟକ୍ତିଙ୍କ ପ୍ରତି ଲକ୍ଷ୍ୟ କରି କହିଲା, ''ଆରେ ଯା ପଳା, ଆମ ସାରଙ୍କୁ କ'ଣ ସିନିୟର ଜୁନିୟର ଶିଖାଉଛୁ? ତୋ ପୁଅ ତ ବିଡ଼ି ସିଗାରେଟ୍ ଖାଇ ସ୍କୁଲର ସବୁ ପିଲାଙ୍କୁ ଖରାପ କଲାଣି । ତୁମ ବାପ ପୁଅଙ୍କର ଯଦି ଏତେ ସମ୍ମାନ ଜ୍ଞାନ ଅଛି; ତୁମେ ଦୁହେଁ ଯାଇଁ ତୁମ ଗାଁରେ ଏକ ସ୍କୁଲ କର । ତୁମ ପିଲାଙ୍କୁ ସମ୍ମାନ ଦେବାଭଳି ଶିକ୍ଷକ ରଖ । କିନ୍ତୁ ଆମ ଗାଁ ସ୍ୱାଧୀନନଗର ଉଚ୍ଚ ବିଦ୍ୟାଳୟରେ ନୁହେଁ ।''

ମୁଁ ଦେଖିଲି ସେଇ ପିଲାଟି ଆଉ କିଏ ନୁହେଁ, ସେ ହେଉଛନ୍ତି ତୋଫାନ । ତା'କଥା ଶୁଣି ଶ୍ରେଣୀର ତା'ଠାରୁ ବୟସରେ ଥିବା ଅତି ସାନ ସାନ ପିଲାମାନେ ତାଳି ମାରି କହିଲେ, ''ଛି! ଛି!! ଲାଜ ଲାଗୁନି । ଏଠିକି ଆସିଛୁ ଆମ ସାରଙ୍କ ସହିତ କଳିକଜିଆ କରିବାକୁ ।''

ଏ ସବୁ ଘଟଣା ମୋର ଇଚ୍ଛା ବିରୋଧରେ ଅତି ନାଟକୀୟ ଭାବେ ଘଟିଗଲା । ମୁଁ କେବେ ଚାହିଁ ନଥିଲି ଯେ ମୁଁ ଓ ସେଇ ଭଦ୍ରବ୍ୟକ୍ତିଙ୍କ ମଧ୍ୟରେ ମୋ ଶ୍ରେଣୀର ପିଲାମାନେ ଆସିଯାଆନ୍ତୁ । ମୋ ପାଇଁ ତୋଫାନ ଓ ପିଲାମାନେ କିଛି କହନ୍ତୁ ।

ତୋଫାନ ଓ ପିଲାମାନଙ୍କ କଥା ଶୁଣି ସେ ଭଦ୍ରବ୍ୟକ୍ତିଜଣକ କ୍ଷୀପ୍ର ଗତିରେ ସେ ସ୍ଥାନ ଛାଡ଼ିଗଲେ । ଆଉ ପ୍ରଧାନ ଶିକ୍ଷକଙ୍କ ଆଗରେ ମୋ ବିରୋଧରେ ଅଭିଯୋଗ କରିବାକୁ ବୋଧହୁଏ ସାହସ କଲେନାହିଁ ।

ଭଦ୍ରବ୍ୟକ୍ତି ଜଣକ ଗଲାପରେ ମୁଁ ଶ୍ରେଣୀଗୃହକୁ ଚାଲିଆସିଲି । ପୂର୍ବବତ୍ ଶିକ୍ଷାଦାନ କଲି । ଯେମିତି ସେ ମୁହୂର୍ତ୍ତରେ କିଛି ଘଟିନାହିଁ ।

●

# ଇଟାଭାଟିର ଶିଶୁ ଶ୍ରମିକ

ସେଦିନ ଏକ ଇଟାଭାଟି ନିକଟସ୍ଥ ରାସ୍ତାରେ ଯାଉଥିଲେ ସୁମନ୍ତବାବୁ । ଇଟାଭାଟିର ଅଳ୍ପଦୂରରେ ରହିଛି ଗାଁଟିଏ । ନାମ ତା'ର ରୁଦ୍ରପୁର । ସେହି ଗ୍ରାମରେ ତାଙ୍କର ମାମୁଘର । ମାମୁ ଓ ମାଇଁ ଅଛନ୍ତି ଆର ପାରିରେ । ସେମାନଙ୍କ ପିଲାଛୁଆ ନଥିଲେ । ମାମୁ ମାଇଁଙ୍କ ଅନ୍ତେ ମାମୁଘର ଢିଅଟି ସେମିତି ଖାଲି ଖାଲି ପଡ଼ି ରହିଅଛି । ସମୟକ୍ରମେ ଢିଅ ଉପରେ ଥିବା ଘରଟି ତଳେ ପଡ଼ି ମାଟିରେ ମିଶିଯାଇଛି ।

ହେଲେ ସୁମନ୍ତବାବୁ ମାମୁଘର ଗାଆଁ ଓ ମାଟିର ମୋହ ଅଜିର ବୁଢ଼ା ବୟସରେ ମଧ୍ୟ ଛାଡ଼ି ପାରିନାହାଁନ୍ତି । ମଝିରେ ମଝିରେ ଯାଇ ମାମୁଘର ଭିଟା ମାଟିରେ ଠିଆ ହୋଇଥିବା ବରଗଛ ତଳେ ବସି ମାମୁଘରର ସ୍ମୃତି ଚାରଣ କରନ୍ତି । ମାମୁ, ମାଇଁ, ଅଜା ଆଈଙ୍କ କଥା ମନେ ପକାନ୍ତି । ସେଥିରେ ତାଙ୍କୁ ଅନେକ ଆନନ୍ଦ ମିଳେ । ସତେ ଯେମିତି ସେ ଏକ ତୀର୍ଥସ୍ଥାନ ଭ୍ରମଣରେ ଆସିଅଛନ୍ତି ।

ସେଦିନ ସୁମନ୍ତବାବୁ ଯେମିତି ଇଟାଭାଟିର ପାଖାପାଖି ହୋଇଛନ୍ତି । ତାଙ୍କ କାନରେ ଏକ ଚମକପ୍ରଦ ଜୀବନ ଦର୍ଶନ ଭିତ୍ତିକ ଗୀତଟିଏ ପଡିଲା । ତାହା ଥିଲା, ''ରେ ଆତ୍ମନ୍ ନିଦ୍ରା ପରିପରି..... ।''

ସେଇ କବିତାଟିକୁ ସେ ପିଲାବେଳେ ପାଠ୍ୟପୁସ୍ତକରେ ପଢ଼ିଥିଲେ । ତାହା ଥିଲା ସ୍ୱର୍ଗତଃ ଭକ୍ତକବି ମଧୁସୂଦନ ରାଓଙ୍କ ରଚିତ । ଭକ୍ତ କବିଙ୍କର

ଏଇ ରଚନାଟିକୁ କିଏ ଗାଇଛି ବୋଲି ଏଣିକି ତେଣିକି ଚାହିଁଲେ । ଭାବିଲେ ବୋଧହୁଏ ଇଟାଭାଟିର କୌଣସି ଶ୍ରମିକ ଗାଉଛି । ମାତ୍ର ଖରାବେଳେ ସେଇ ନିର୍ଜନ ସ୍ଥାନରେ କେହି ଥିବାର ସେ ଦେଖିଲେ ନାହିଁ ।

ତାଙ୍କ ମନରେ ଗୀତଟି ଗାଉଥିବା ମଣିଷ ଜଣକୁ ଦେଖିବା ପାଇଁ ଆଗ୍ରହ ଆସିଲା । ସେ ଆଉ ସିଧା ମାମୁଘର ଗାଁକୁ ନ ଯାଇ ଚାଲିଲେ ରାସ୍ତାକଡ଼ରେ ଅଳ୍ପ ଦୂରରେ ଥିବା ସେଇ ଇଟାଭାଟି ଆଡ଼କୁ । ଗୀତର ସୁର ତାଙ୍କୁ ବାଟ କଢ଼ାଇ ନେଲା । ସେ ସୁନା ପିଲାଟି ପରି ଗୀତର ସୁର ଭାସି ଆସୁଥିବା ଦିଗରେ ଚାଲିଲେ ।

ଇଟାଭାଟିର ଗଛ ପଟେ ଯାହା ଦେଖିଲେ ସେଥିରେ ତାଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଦେଖିଲେ ଭାଟିର ପଛ ପଟରେ ଦିନ ଦୁଇଦିନ ତଳର କଞ୍ଚା ଇଟା ଖଣ୍ଡମାନ ପଡ଼ି ରହିଅଛି । ଆଉ ଦଶବାର ବର୍ଷର ପିଲାଟିଏ ମାଟିରେ ପାଣି ମିଶାଇ ଇଟାତିଆରି ଉପଯୋଗୀ କାଦୁଅ ତିଆରି କରୁଛି ।

ପିଲାଟି ଯେ ଜଣେ ଶିଶୁ ଶ୍ରମିକ- ଏହା ସୁମନ୍ତବାବୁ ଅତି ସହଜରେ ବୁଝି ପାରିଲେ । ସେ ପିଲାଟିର ପାଖକୁ ଗଲେ । କହିଲେ, ବାବୁରେ ! ଏତେ ସୁନ୍ଦର ଗୀତ ଗାଉଛୁ । ତୋ ବୟସର ପିଲାମାନେ ହସିଖେଳି ସମୟ କାଟୁଛନ୍ତି । ତୁ ସ୍କୁଲ ନ ଯାଇ ଏଠି ଖଟୁଛୁ କାହିଁକି ?''

ପିଲାଟି କହିଲା, ''ଏଠି ଖଟିବା ପାଇଁ ମୋତେ କେହି କହି ନାହାଁନ୍ତି । ମୁଁ ନିଜେ ନିଜ ପାଇଁ କାମ କରୁଛି । ଅଧିକ ଇଟା ତିଆରି କଲେ ଅଧିକ ପଇସା ମଧ ପାଇବି ।

ପିଲାଟିର କଥାଶୁଣି ସୁମନ୍ତବାବୁ ଆଶ୍ଚର୍ଯ୍ୟ ହେଲେ । ଟିକିଏ ରହି ପୁଣି ଆରମ୍ଭ କଲେ, ''ନା, ବାପା ! ସେମିତି କହନ୍ତି । ଏତେ ପିଲାବେଳୁ ତୋର ପଇସା କ'ଣ ହେବ କହିଲୁ ? ତୋ ମାଲିକ ଜଣେ ନିଷ୍ଠୁର ଲୋକ ।

ତୋତେ ଶିଶୁ ଶ୍ରମିକ ସଜାଇ ସେ ଆନନ୍ଦ ପାଉଛନ୍ତି । ଆଇନ ଅନୁସାରେ ତାଙ୍କୁ ଦଣ୍ଡ ଦେବାର ବ୍ୟବସ୍ଥା ମୁଁ କରିବି । ତୋର ଏଇଟା ପାଠପଢ଼ାର ସମୟ । ଏ ସମୟ ଥରେ ଚାଲିଗଲେ ଆଉ ଫେରି ଆସିବ ନାହିଁ ।''

ପିଲାଟି ସୁମନ୍ତ ବାବୁଙ୍କ ଆଡ଼କୁ ଚାହିଁ ଟିକିଏ ହସିଲା ।

ପୁଣି ଆରମ୍ଭ କଲା, ''ମୁଁ ପରା ସ୍କୁଲକୁ ପାଠ ପଢ଼ିବାକୁ ଯାଉଛି । ମୋ ପାଠ ପଢ଼ାର ବ୍ୟବସ୍ଥା ଏଇ ଇଟାଭାଟିର ମାଲିକ ଜଣକ କରିଛନ୍ତି । ତାଙ୍କ ଚେଷ୍ଟାରେ ଆମ ଗ୍ରାମ ରୁଦ୍ରପୁରରେ ଏକ ଶିଶୁ ଶ୍ରମିକ ବିଦ୍ୟାଳୟ ଖୋଲାଯାଇଅଛି । ସନ୍ଧ୍ୟାବେଳେ ମୁଁ ସେଠାରେ ପଢୁଅଛି ।''

''ତା'ହେଲେ କ'ଣ ଇଟାଭାଟିର ମାଲିକ ତୋତେ ଏଇ ନିଧୂମ ଖରାବେଳେ ଅଧିକ ପଇସା ଦେବେ ବୋଲି କହି ଖଟାଇବେ ? ଏହା ତୋ ଭଳି ସରଳ ନିଷ୍ପାପ ଶିଶୁପ୍ରତି ଅତ୍ୟାଚାର । ସମଗ୍ର ଶିଶୁମାନଙ୍କ ପାଇଁ ଅତ୍ୟାଚାର । ମୁଁ ଏଇକଥା ସହି ପାରିବି ନାହିଁ । ମାଲିକ ଜଣକ ଶିଶୁ ଅଧିକାର ଆଇନ ଖିଲାପ କରୁଛନ୍ତି । ସେଥିପାଇଁ ତାଙ୍କୁ ଦଣ୍ଡଦେବାର ବ୍ୟବସ୍ଥା କରିବି ।'' ଏହା କହି ସୁମନ୍ତବାବୁ ଏକ ଦୀର୍ଘ ନିଃଶ୍ୱାସ ଛାଡ଼ିଲେ ।



ସୁମନ୍ତ ବାବୁଙ୍କ କଥାଶୁଣି ପିଲାଟି ମନେ ମନେ ବିରକ୍ତ ହେଲା । ସେ ପ୍ରତିକ୍ରିୟା ପ୍ରକାଶ କରି କହିଲା, ''ଏଇ ଭାଟିର ମାଲିକ ଜଣେ ପାଠଶାଠ ଜାଣିଥିବା ମଣିଷ । ତାଙ୍କୁ ଆମ ଦେଶର ଆଇନ କାନୁନ୍ ମଧ୍ୟ ଜଣାଅଛି ।''

''ତେବେ ସେ ଏପରି କାମ କାହିଁକି କରୁଛନ୍ତି ।'' ସୁମନ୍ତବାବୁ ପଚାରିଲେ ।

ପିଲାଟି ସଙ୍ଗେ ସଙ୍ଗେ ଦୁଃଖ ପ୍ରକାଶ କରି କହିଲା, ''ସେ କିଛି କରି ନାହାଁନ୍ତି । ଯାହା ଘଟିଛି, ତାହା ମୋର ଭାଗ୍ୟ କରିଛି । ଜନ୍ମ ହେବାପରେ ପରେ ବାପା ମୋର ଆର ପାରିକି ଚାଲିଗଲେ । ମା' ଦିନ ମଜୁରିଆ ହୋଇ ଆମ ପାଇଁ ଅନ୍ନ ଦୁଇମୁଠା ଯୋଗାଡ଼ କରୁଥିଲା । ଗଲାବର୍ଷରୁ ସେ ରୋଗରେ ପଡ଼ିଛି ଯେ ଆଉ ଉଠୁନାହିଁ । ତେଣୁ ଏଠାରେଆସି କାମ କରି ଯାହାପାଉଛି, ସେଥିରେ ଆମେ ଚଳୁଛୁ । ମା' ପାଇଁ ଔଷଧ ପତ୍ର ମଧ୍ୟ କିଣୁଛି । ତେବେ..... ।''

''ତେବେ ଆଉ କ'ଣ ? ସୁମନ୍ତବାବୁ ପଚାରିଲେ । ପିଲାଟି କହିଲା ''ଖରାବେଳେ ଖଟିବା ପାଇଁ ମୋତେ କେହି କହି ନାହାଁନ୍ତି । ଅଧିକ ଇଟା ତିଆରି କଲେ ଅଧିକ ପଇସା ପାଇବି । ମୋ ମା' ପାଇଁ ଔଷଧ ପତ୍ର ସେଇ ପଇସାରେ କିଣିବି । ଆପଣ କହିଲେ, ମୁଁ କାମ ନକଲେ ମୋତେ କିଏ ଦି'ପଇସା ଦେବ ? ମୋ ମା'ର ଔଷଧ ପତ୍ର ଖର୍ଚ୍ଚ କିଏ ତୁଲେଇବ ?''

ପିଲାଟି ମୁହଁରୁ ତା'ର ବିଚାରଧାରା ଶୁଣି ସୁମନ୍ତବାବୁ ନୀରବ ରହିଲେ । ଇଟାଭାଟିର ମାଲିକ ଶିଶୁ ଶ୍ରମିକର ଆଇନଗତ ଦିଗପ୍ରତି ଯେ ସଚେତନ ଅଛନ୍ତି, ଏକଥା ବୁଝିବାକୁ ତାଙ୍କୁ ଡେରିଲାଗିଲା ନାହିଁ । ସେ ଆଇନ ଅନୁଯାୟୀ ପିଲାଟିକୁ କାମରେ ନିୟୋଜିତ କରିଛନ୍ତି, ପାଠ ପଢ଼ାଉଛନ୍ତି; ଆଉ ତା'ର ଭଲ ମନ୍ଦ ଖବର ମଧ୍ୟ ବୁଝୁଛନ୍ତି ।

ପିଲାଟି ସୁମନ୍ତବାବୁଙ୍କ ନୀରବତା ଭାଙ୍ଗି ପଚାରିଲା, ''ଆଜ୍ଞା ! ଆପଣ କୁଆଡ଼େ ଯିବେ ?''

ସୁମନ୍ତବାବୁ କହିଲେ, ''ମୋ ମାମୁଘର ଗାଁକୁ । ତୁମ ସ୍କୁଲ ଥିବା ରୁଦ୍ରପୁର ଗ୍ରାମକୁ ।''

ପିଲାଟି କହିଲା, ''ହଉ ଆଜ୍ଞା ! ଆପଣ ଯାଆନ୍ତୁ । ହେଲେ ଆମର ଶିଶୁ ଶ୍ରମିକ ବିଦ୍ୟାଳୟଟିକୁ ଟିକିଏ ଦେଖି ଆସିବେ ।

ସୁମନ୍ତବାବୁ କହିଲେ, ''ଯେତେବେଳେ ଯାଉଛି ନିଶ୍ଚୟ ଦେଖି ଆସିବି ।''

ସେଠାରୁ ସେ ସିଧାସିଧା ଚାଲିଲେ ମାମୁଘର ଗାଁ ରୁଦ୍ରପୁରକୁ । ଗାଁରେ କାହା ସହିତ କିଛି କଥାବାର୍ତ୍ତା ନକରି ସେ ମାମୁଘର ଡିଅ ପାଖରେ ପହଞ୍ଚିଲେ । ମାତ୍ର ସେଠାରେ ସେ ଡିଅଟି ସେମିତି ପରିତ୍ୟକ୍ତ ହୋଇ ନଥିଲା । ଡିଅ ଉପରେ ଗୋଟିଏ ପାର୍ଶ୍ୱରେ ଥିବା ବରଗଛଟି ମାମୁଘରର ସ୍ମୃତି ବହନ କରି ସେମିତି ଠିଆ ହୋଇ ରହିଥିଲା । ସତେ ଯେମିତି ତାଙ୍କୁଡାକୁଥିଲା, ''ଆସ ! ମୋ ତଳେ ଟିକିଏ ବସ । ମାମୁ, ମାଇଁ, ଅଜା, ଆଈଙ୍କ ସ୍ମୃତି ଚାରଣ କର ।''

ଆଉ ସେଇ ପରିତ୍ୟକ୍ତ ଡିଅ ଉପରେ ଠିଆ ହୋଇଛି ମାମୁ ମାଈଁଙ୍କ ସ୍ମୃତି ବହନ କରି ବିଦ୍ୟାଳୟଟିଏ । ନାମ ତା'ର ''ସାଧୁ-ସୁସ୍ମିତା ଆଦର୍ଶ ଶିଶୁ ଶ୍ରମିକ ବିଦ୍ୟାଳୟ'' ।

ସୁମନ୍ତବାବୁ ଆଉ ବିଦ୍ୟାଳୟ ଭିତରକୁ ଗଲେ ନାହିଁ । ଯିବାର ମଧ ଅବକାଶ ନଥିଲା । କାରଣ ବିଦ୍ୟାଳୟ ହତା ମଧକୁ ଯିବା ନିମନ୍ତେ ଥିବା ପ୍ରବେଶ ଦ୍ୱାରଟିରେ ଏକ ବଡ଼ ତାଲା ଝୁଲୁଥିଲା । ହୁଏତ ସନ୍ଧ୍ୟାବେଳକୁ ଖୋଲିବ ଓ ଦିନରେ ବିଭିନ୍ନ ସ୍ଥାନରେ କାମ କରୁଥିବା ପିଲାମାନେ ଆସି ପଢ଼ିବେ ।



ସେ ପ୍ରବେଶଦ୍ୱାରର ବାହାରେ ବାହାରେ ଥାଇ ମାମୁ ମାଈଁଙ୍କ ଉଦ୍ଦେଶ୍ୟରେ ସଭକ୍ତି ପ୍ରଣାମ ଜଣାଇ ଫେରି ଆସିଲେ ସହରରେ ଥିବା ତାଙ୍କ ବାସଘରକୁ ।

ମାମୁ ମାଈଁଙ୍କ ସ୍ମୃତି ସହିତ ତାଙ୍କ ସ୍ମୃତିରେ ଆଉ ଗୋଟିଏ ସ୍ମୃତି ଯୋଡ଼ି ହୋଇଗଲା ।

ସେଇ ସ୍ମୃତି ହେଉଛି ସେଇ ଶିଶୁ ଶ୍ରମିକ, ଯିଏ ବଞ୍ଚି ରହିବା ପାଇଁ ଶ୍ରମ ଦେଉଛି, ପାଠ ପଢୁଛି, ଆଉ ରୋଗିଣା ବୁଢ଼ା ମାଆଟିର ମଧ୍ୟ ସେବା ଶୁଶ୍ରୂଷା କରୁଛି ।



# ଭିଟାମାଟିର ମୋହ

ରାଜ୍ୟରେ ନାହିଁ ନଥିବା ବନ୍ୟା । ଜିଲ୍ଲା ପ୍ରଶାସନ ଘୋଷଣା କରିଦେଲେ ଗାଁ ଛାଡ଼ି ନିରାପଦ ସ୍ଥାନକୁ ଚାଲି ଯିବାପାଇଁ । ଏଇ ବାର୍ତ୍ତା ମଧ୍ୟ ଘନ ଘନ ରେଡ଼ିଓ ଓ ଟେଲିଭିଜନରେ ପ୍ରସାରିତ ହେଲା । ବାପା ଆସି ଆମ ସମସ୍ତଙ୍କୁ କହିଲେ, ''ତୁମେ ସମସ୍ତେ ପ୍ରସ୍ତୁତ ହୋଇଯାଅ, ଆମକୁ ଆଜି ଦିନ ଦୁଇଟା ସୁଦ୍ଧା ଘରଛାଡ଼ି ପ୍ରଶାସନ ସ୍ଥିର କରିଥିବା ନିକଟସ୍ଥ ଆଶ୍ରୟସ୍ଥଳୀକୁ ଯିବାକୁ ହେବ ।''

ବାପାଙ୍କ କଥା ଶୁଣି ଜେଜେ କହିଲେ, ''ଯାହାହେଉ ପ୍ରଶାସନ ଆମ କଥା ବୁଝୁଛି । ତୁମେ ସବୁ ଆଶ୍ରୟସ୍ଥଳୀକୁ ଯାଅ । ହେଲେ.... ।''

''ହେଲେ ପୁଣି କ'ଣ ?'' ବାପା ପଚାରିଲେ ।

ଜେଜେ କହିଲେ, ''ଆରେ ସାଧୁ ! ତୁ ଏଡ଼େଟିରୁ ଏଡ଼େଟିଏ ହେଲୁଣି । ପିଲା ଛୁଆଙ୍କର ବାପ ବି ହେଲୁଣି । ଏଇ ସାଧାରଣ କଥାଟିକୁ ବୁଝି ପାରୁନୁ ?''

ବାପା ଜେଜେଙ୍କୁ କହିଲେ, ''ବାପା ! ତୁମେତ ଜାଣ ମୁଁ ସବୁକଥା ବୁଝି ପାରେନା । ଏ ବିପଦ ସମୟରେ ସିଧାସିଧା କହି ଟିକିଏ ବୁଝେଇ ଦେଲେ କ'ଣ ହୁଅନ୍ତା ନାହିଁ ?''

ଜେଜେ ବଡ଼ ନିର୍ଲିପ୍ତ ଭାବରେ କହିଲେ, ''ସାଧୁ ପରିସ୍ଥିତି ଯାହା ହେଉନା କାହିଁକି, ଘରର ମୁରବି କ'ଣ କେବେ ନିଜ ଭିଟାମାଟି ଛାଡ଼ି ବାହାରକୁ ଯାଏ ? ତୁ ବୋହୂ ଓ ପିଲାମାନଙ୍କ ସହିତ ଆଶ୍ରୟ ସ୍ଥଳକୁ

ଚାଲିଯାଆ । ମୁଁ ବୁଢ଼ାଲୋକ । ମୋ ଜୀବନର ଆଉ କି ମୂଲ୍ୟ ଅଛି ! ମୁଁ ଏଇଟି ରହି ମୋ ଘରଦ୍ୱାର ଓ ଭିଟାମାଟିକୁ ଜଗି ରହିବି ।''

ଜେଜେଙ୍କ କଥା ଶୁଣି ବାପା ଜେଜେଙ୍କୁ ବଡ଼ ବିରକ୍ତି ମିଶା ସ୍ୱରରେ କହିଲେ, ''ତୁମେ ଯାହା କହିଲେ ବି ମୁଁ ତୁମକୁ ଏ ସ୍ଥାନରେ ଛାଡ଼ି ଯିବି ନାହିଁ । ଆଜି ଯଦି ବନ୍ୟାପାଣି ଆମର ଏ ଧୋୟା ଗାଁକୁ ଧୋଇ ମୂଳପୋଛ କରିଦିଏ । ତେବେ ତୁମର ସ୍ଥିତି କ'ଣ ହେବ ତୁମେ ଭାବି ପାରୁଛ ତ !''

ଜେଜେ ବାପାଙ୍କ ମୁହଁକୁ ଉଦାସ ମନରେ ଚାହିଁ ରହିଲେ । କିଛି କହିଲେ ନାହିଁ ।

ବାପା ପୁଣି ଆରମ୍ଭ କଲେ, ''ଘରର ଧନ ସଂପତ୍ତି ଜଗି ଯଦି ତୁମର ଜୀବନ ଚାଲିଯାଏ, ତେବେ ସବୁଠାରୁ ବେଶୀ କ୍ଷତିଗ୍ରସ୍ତ ହେବି ମୁଁ । ତୁମେ କ'ଣ ଚାହୁଁଛ ସବୁଦିନ ପାଇଁ 'ବାପା' ଡାକ ମୋର ଲୋପ ପାଇଯାଉ ?''



ଏଇ ସମୟରେ ଜଳବନ୍ଦୀ ମଧ୍ୟରୁ ଆମକୁ ଉଦ୍ଧାର କରିବା ପାଇଁ ଏକ ଦେଶୀ ଡଙ୍ଗା ଆସି ଆମ ଘର ଆଗରେ ଲାଗିଲା । କାଳ ବିଳମ୍ୱ

ନକରି ବୋଉ ମୋତେ ଓ ସାନ ଭଉଣୀକୁ ଧରି ଡଙ୍ଗାରେ ବସି ପଡ଼ିଲା । ବାପା ଜେଜେଙ୍କୁ ଯେତେ ବୁଝେଇଲେ ମଧ୍ୟ ଜେଜେ ଆସିବାକୁ ନାରାଜ ହେଲେ । ଏପରିକି ବାପାଙ୍କୁ ଗାଳି ଗୁଲଜ କଲେ ।

ବାପ ଅଗତ୍ୟା କିଛି ଉପାୟ ନପାଇ ଡଙ୍ଗାରେ ବସି ପଡ଼ିଲେ । ନାଉରିଆକୁ କହିଲେ, ‘‘ଆଉ ବେଶୀ ଡେରି ନକରି ବନ୍ୟା ଆଶ୍ରୟସ୍ଥଳୀରେ ପହଞ୍ଚାଇ ଦିଅ ।’’

ନାଉରିଆ ବନ୍ୟା ଜଳ ରାଶି ଭେଦିଭେଦି ଡଙ୍ଗାବାହି ଚାଲିଲା । ଇତି ମଧ୍ୟରେ ଜଳପତନ ବଢ଼ି ବଢ଼ି ଚାଲିଲା । କ୍ରମଶଃ ଗୋରୁ ଗାଈ ଓ ଅନ୍ୟାନ୍ୟ ଗୃହ ପାଳିତ ପଶୁମାନେ ଭାସି ଭାସି ଚାଲିଲେ । ଏସବୁ ଦୃଶ୍ୟଦେଖି ଆମକୁ ଭାରି ଡର ଲାଗିଲା । ବାପା ବ୍ୟସ୍ତ ହୋଇ ମଝିରେ ମଝିରେ କହୁଥାନ୍ତି, ‘‘ପିଲାମାନେ ବର୍ତ୍ତମାନ ଜେଜେ ତୁମର ନିଶ୍ଚିତ ଭାବେ ଘରର ଚାଳ ଉପରେ ବସିଥିବେ । ଯେତେ ବୁଝେଇଲେ ବି ମୋ କଥା ମାନିଲେ ନାହିଁ । ମୁଁ ବା କ’ଣ କରିବି ? ହେ ପ୍ରଭୋ ! ବାପାଙ୍କୁ ମୋର ରକ୍ଷାକର ।’’

ଏଇ ସମୟରେ ବାପାଙ୍କର ନଜର ଡଙ୍ଗା ଭିତରେ ଥିବା ଏକ ଛୋଟିଆ କଣା ଉପରେ ପଡ଼ିଲା । ସେ କଣା ନେଇ ଡଙ୍ଗା ଭିତରକୁ ପାଣି ପଶୁଥିଲା । ବାପା ନାଉରିଆକୁ କହିଲେ, ‘‘ନାଉରିଆ ଭାଇ । ଛୋଟ କଣା ଦେଇ ଡଙ୍ଗା ଭିତରକୁ ପାଣି ପଶୁଛି । ତୁମେ କ’ଣ ଡଙ୍ଗାଟିକୁ ଆଣିବା ପୂର୍ବରୁ ଟିକିନିଖି ପରୀକ୍ଷା କରି ନଥିଲ ?’’

ନାଉରିଆ ଜଣକ ଗର୍ବର ସହିତ କହିଲା, ‘‘ଆଜ୍ଞା ! ସେଇ କଣାଟି ଦୁଇବର୍ଷ ତଳେ ହୋଇଥିଲା । ସେ ସ୍ଥାନରେ ମୁଁ ବେଣା ଚେର ଏପରି ଖୁନ୍ଦି ଦେଇଥିଲି ଯେ ସବେ ଠାରୁ ଆଉ ପାଣି ଟୋପିଏ ଡଙ୍ଗା ଭିତରକୁ ପଶୁ ନଥିଲା । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୋ ପୁଅ ମଦନା ଡଙ୍ଗାଟିଭିତରୁ ପାଣି ବୋହି ପଦାରେ ପକାଇ ଦେବ ।’’

ଏହାକହି ନାଉରିଆ ପୁଅକୁ ନିର୍ଦ୍ଦେଶ ଦେଇ କହିଲା, ''ଆରେ ମଦନା ! ତୁ କ'ଣ ଖାଲି ଖାଲି ଡଙ୍ଗା ଭିତରେ ହାତ ଗୋଡ଼ ବାନ୍ଧି ବସିଛୁ ? ତୋତେ କ'ଣ ଡଙ୍ଗା ଭିତରେ ପଶୁଥିବା ପାଣି ଦେଖାଯାଉନି । ଯାଆ ଶୀଘ୍ର ଶୀଘ୍ର ଭିତରର ପାଣିକୁ ଡଙ୍ଗା ବାହାରକୁ ପକା ।''

ନାଉରିଆର କଥା ସରୁ ନସରୁଣୁ ବାପା ଚିତ୍କାର କରି କହି ଉଠିଲେ, ''ନାଉରିଆ ଭାଇ ! ଡଙ୍ଗାର ସେଇ ଛୋଟିଆ କ'ଣାଟି ଏକ ବଡ଼ କଣାରେ ହୁଏତ ପରିଣତ ହେଲାଣି । ଡଙ୍ଗା ଭିତରକୁ ଖୁବ୍ ଜୋରରେ ପାଣି ପଶିବାକୁ ଲାଗିଲାଣି । ସେଥିପାଇଁ ଆଗରୁ ଟିକିଏ ନିଘା ଦେଲନି । ଆଜି ମଣିଷ କି ଅସୁବିଧାରେ ପଡ଼ିଲା କେଜାଣି ।''

ସଙ୍ଗେ ସଙ୍ଗେ ମଦନା ସହିତ ଆମେ ମଧ ଆମ ସାଥିରେ ନେଇଥିବା ବାଲ୍‌ଟି ଓ ଡେକ୍‌ଚି ସାହାଯ୍ୟରେ ଡଙ୍ଗାଟିରୁ ପାଣି ବାହାର କଲୁ । ତଥାପି ରକ୍ଷା ମିଳିଲା ନାହିଁ । ଗଭୀର ଜଳ ମଧ୍ୟରେ ଡଙ୍ଗାଟି ଉବୁଟୁବୁ ହେବା ଅବସ୍ଥାକୁ ଆସିଗଲା ।

ଏଇ ସମୟରେ ସ୍ୱତଃପ୍ରବୃତ୍ତଭାବେ ବାପାଙ୍କ ପାଟିରୁ ବାହାରି ଆସିଲା, ''ଗୋଟିଏ ବିପଦରୁ ରକ୍ଷା ପାଇବାକୁ ଚେଷ୍ଟା କରୁଥିଲା ବେଳେ ମଣିଷ ପୁଣି ଆଉ ଗୋଟିଏ ବିପଦରେ ପଡ଼ିଗଲା । ହେ ପ୍ରଭୋ ! ତୁମେ ଆମ ସମସ୍ତଙ୍କୁ ଏ ବିପଦରୁ ରକ୍ଷାକର ।''



ହୁଏତ ବାପାଙ୍କର ଈଶ୍ୱରଙ୍କୁ କହିଥିବା କରୁଣା ପ୍ରାର୍ଥନା ତାଙ୍କ କାନରେ ପଡ଼ିଲା । ଏଇ ସମୟରେ ବିପର୍ଯ୍ୟୟ ପ୍ରଶମନ ଦଳର ଏକ ଶକ୍ତି ଚାଳିତ ବୋଟ ଅଦୂରରେ ଦେଖାଦେଲା । ବାପା ଡଙ୍ଗାଟି ଉପରେ ଠିଆ ହୋଇ ହାତ ଦୁଇଟିକୁ ଉପରକୁ ଟେକି ରହିଲେ ଓ ଆମ ସମସ୍ତଙ୍କୁ ସେପରି କରିବାକୁ କହିଲେ । ଆମେ ଯେ ସେମାନଙ୍କର ସାହାଯ୍ୟ ଚାହୁଁଚୁ ଏକଥା ଉଦ୍ଧାରକାରୀ ଦଳର ଦଳପତି ହୁଏତ ଜାଣି ପାରିଲେ ।

ସଙ୍ଗେ ସଙ୍ଗେ ଶକ୍ତି ଚାଳିତ ବୋଟଟି ଆମ ଆଡ଼କୁ ମୁହାଁଇଲା । ବୋଟଟି ଆମ ପାଖରେ ପହଞ୍ଚୁ ପହଞ୍ଚୁ ଆମେ ସମସ୍ତେ ସେଥିରେ ବସି ପଡ଼ିଲୁ । ନାଉରିଆ ଓ ତା'ର ପୁଅ ମଧ୍ୟ ଡଙ୍ଗାଟିର ମୋହ ଛାଡ଼ି ସେଥିରେ ବସି ପଡ଼ିଲେ ।

ଚାହୁଁ ଚାହୁଁ ଅତଳ ଜଳ ଗର୍ଭରେ ଡଙ୍ଗାଟି ଆମ ଆଖି ଆଗରେ ବୁଡ଼ିଗଲା ।



ଏଇ ସମୟରେ ଉଦ୍ଧାରକାରୀ ଦଳର ଦଳପତି ବାପାଙ୍କୁ ପଚାରିଲେ, ''ଆପଣଙ୍କ ଗାଁରୁ ସମସ୍ତେ ଆସିଛନ୍ତି ତ ?''

''ନା, ମୋର ବୃଦ୍ଧ ବାପା ଆସି ନାହାଁନ୍ତି । ତାଙ୍କୁ ଆମ ସହିତ ଆସିବାକୁ ଆମେ ଯେତେ ବୁଝାଇଲେ ମଧ୍ୟ ବୁଝିଲେ ନାହିଁ । ବରଂ ଆମ ଉପରେ ଭୀଷଣ ବିରକ୍ତ ହୋଇ ଏଣୁ ତେଣୁ...''

ଦଳପତି ଜଣକ କହିଲେ, ''ଅଉ ! ଆଉ କିଛି କହିବାର ଆବଶ୍ୟକତା ନାହିଁ । ସେ ହେଲେ ପୁରୁଣାକାଳିଆ ମଣିଷ । ଜୀବନ ପଛେ ଯିବ, ମାତ୍ର ସେମାନେ ଅତି ସହଜରେ ଭିଟାମାଟିର ମୋହ ଛାଡ଼ିପାରିବେ ନାହିଁ ।''

ଏହାକହି ସେ ବୋଟରେ ଡ୍ରାଇଭରକୁ କହିଲେ, ''ଶୀଘ୍ର ବୋଟ୍‌ଟିକୁ ଗଣେଶ୍ୱରପୁର ଗାଆଁ ଆଡ଼କୁ ଚଳାଅ । ଯଦି କିଏ ରହିଯାଇଥିବେ, ସେମାନଙ୍କୁ ଆଣିବାକୁ ବ୍ୟବସ୍ଥା କରାଯିବ ।''

ଦଳପତିଙ୍କ ନିର୍ଦ୍ଦେଶରେ ବୋଟଟି ଯାଇ ସିଧା ସିଧା ଆମ ଘର ଆଗରେ ପହଞ୍ଚିଗଲା । ସେ ବାପାଙ୍କୁ କହିଲେ, ''ଆପଣ କିଛି ବୁଢ଼ାଙ୍କୁ କହିବାର ଆବଶ୍ୟକତା ନାହିଁ । ମୁଁ ତାଙ୍କୁ ଆଣିବାର ବ୍ୟବସ୍ଥା କରିବି । କାରଣ ସେ ଭାସିଗଲେ ମଧ୍ୟ ଭିଟାମାଟିର ମୋହ ଛାଡ଼ିପାରିବେ ନାହିଁ ।''

ତା'ପରେ ଦଳପତି ଜଣକ ବୋଟରେ ଥିବା କର୍ମଚାରୀମାନଙ୍କୁ ଆଦେଶ ଦେଲେ, ''ଯାଅ, ଚାଳ ଉପରେ ବସିଥିବା ମଉସାଙ୍କୁ ନେଇଆସ । ମଉସା ଯଦି ଆସିବାକୁ ରାଜି ହୁଅନ୍ତି ଭଲ । ଯଦି ରାଜି ନହୁଅନ୍ତି ତେବେ ତାଙ୍କୁ ସିଧା ସିଧା ଟେକି ଆଣିବ ।''



ଶେଷରେ ତାହାହିଁ ହେଲା । ଜେଜେ ଆସିବାକୁ ରାଜି ନ ହେବାରୁ ଉଦ୍ଧାରକାରୀ ଦଳର ଲୋକେ ତାଙ୍କୁ ଟେକି ଟେକି ଆଣି ବୋଟ ମଧ୍ୟରେ ବସାଇ ଦେଲେ ।

ସଙ୍ଗେ ସଙ୍ଗେ ଶକ୍ତିଚାଳିତ ବୋଟ୍‌ଟି ଆଉ କିଛି ଲୋକଙ୍କୁ ଉଦ୍ଧାର କରି ଆଶ୍ରୟସ୍ଥଳକୁ ଚାଲିଲା ।

ଆମେ ଭାବିଥିଲୁ ଜେଜେ ଆମ ସମସ୍ତଙ୍କୁ ଦେଖି ଖୁସି ହେବେ । ବରଂ ସେ ମନ ଦୁଃଖରେ ଚୁପଚାପ ବସି ରହିଲେ ।

ଜେଜେ ଆମକୁ କିଛି କହୁନଥିବାରୁ ବାପା ତାଙ୍କ ଅଭିମାନ ଭାଙ୍ଗିବା ପାଇଁ କହିଲେ, ''ଆପଣ କାହିଁକି ଆମକୁ ଏ ବୟସରେ ପର

କରି ଦେଉଛନ୍ତି ? ଆମେ ଜୀବନଯାକ ଆପଣଙ୍କ ସେବା କରିବାରେ ତ କିଛି ଅବହେଳା କରିନାହୁଁ । ଆପଣ ଏ ପ୍ରଳୟଙ୍କରୀ ବନ୍ୟାରେ ମଣିଷର ଜୀବନ ବିପଦର ସମ୍ମୁଖୀନ ହେଉଥିଲାବେଳେ ସେ ଘରଟିକୁ କାହିଁକି ଜଗି ରହିଥିଲେ ?''

ଜେଜେ ବାପାଙ୍କ ଆଡ଼କୁ ସ୍ଥାଣୁ ନିର୍ଜୀବ ମଣିଷଟି ପରି ଚାହିଁ ରହିଲେ ।

ପୁଣି ବାପା ଆରମ୍ଭ କଲେ, ''ବାପା ! ବନ୍ୟାର ଏ ବିପର୍ଯ୍ୟୟ ସବୁଦିନେ ରହିବ ନାହିଁ । ଘର ଭାଙ୍ଗିଗଲେ ଘର ତିଆରି ହେବ । ଧନ ସଂପତ୍ତିର କ୍ଷୟ ହେଲେ ପୁଣି ଧନ ସଂପତ୍ତି ହେବ । ତୁମର କ'ଣ ଏତିକିଟିକେ ବିଶ୍ୱାସ ତୁମର ଏ ଅଧବ ଅକିଞ୍ଚନ ପୁଅ ଉପରେ ନାହିଁ ।''

ଏହାଶୁଣି ଜେଜେ କହିଲେ, ''ପୁଅରେ ! ତୁ କାହିଁକି ବୁଝିବୁ, ମୋ ଭିଟାମାଟି ଓ ହାତଗଢ଼ା ଘରର ମୋହ ମୋ ପାଇଁ କେତେ ଅଧିକ ?''

ଜେଜେଙ୍କ ପାଟିରୁ କଥା ନସରୁଣୁ ଶକ୍ତି ଚାଳିତ ବୋଟଟି ଆଶ୍ରୟସ୍ଥଳରେ ପହଞ୍ଚି ଯାଇଥିଲା ।

ଆମେ ସମସ୍ତେ ବୋଟରୁ ଓହ୍ଲାଇଲୁ ।

ବାପା ଜେଜେଙ୍କର ହାତଧରି ଧୀରେ ଧୀରେ ବୋଟରୁ ଓହ୍ଲାଇଲେ ।

ତଥାପି ଜେଜେ ହୁଏତ ବୁଝି ନଥିଲେ ଯେ ସେଇ ଆଶ୍ରୟସ୍ଥଳୀକୁ ହାତଧରି ନେଇଥିବା ପୁଅଟି ହେଉଛି ତାଙ୍କ ବାର୍ଦ୍ଧକ୍ୟର ଆଶ୍ରୟ ।



# ରିକ୍ସା ଅଙ୍କଲ୍

ପ୍ରତିଦିନ ସକାଳୁ ସକାଳୁ ରିକ୍ସା ଅଙ୍କଲ ଉଠି ପଡ଼ନ୍ତି । ନିତ୍ୟକର୍ମ ସାରି ଏକ ସଫା କପଡ଼ା ଆଣି ରିକ୍ସାରେ ଲାଗିଥିବା ଧୂଳିମଳି ସଫା କରନ୍ତି । କାଳେ ସେ ସବୁ ପିଲାମାନଙ୍କ ସାର୍ଟ ପ୍ୟାଣ୍ଟରେ ଲାଗିଯିବ । ଯଦି ଧୂଳିମଳି ଲାଗିଯିବ, ତେବେ ପିଲାମାନଙ୍କ ମନରେ ଯେତେ କଷ୍ଟ ନହେବ, ତାଙ୍କ ମନରେ ତାହାଠାରୁ ଅଧିକ କଷ୍ଟ ହେବ । କାରଣ ତାଙ୍କ ରିକ୍ସାର ସେଇ କୁନିକୁନି ପିଲାମାନେ ହେଉଛନ୍ତି ତାଙ୍କର ସବୁଠାରୁ ଅଧିକ ସମ୍ମାନସ୍ପଦ ଯାତ୍ରୀ । ସେମାନଙ୍କ ଯୋଗୁଁ ସେ ଚଳନ୍ତି ଓ ଗୁଜୁରାଣ ମେଣ୍ଟାନ୍ତି ମଧ୍ୟ ।

ସେଇ କୁନି କୁନି ଯାତ୍ରୀମାନେ ହେଉଛନ୍ତି ତାଙ୍କ ଗାଁଠାରୁ ଦୁଇ କିଲୋମିଟର ଦୂରରେ ଅବସ୍ଥିତ ଶିଶୁ ବିଦ୍ୟାଳୟର ଛାତ୍ରଛାତ୍ରୀ ।

ପ୍ରତିଦିନ ଘରକୁ ଘର ଯାଇ ରିକ୍ସା ଅଙ୍କଲ୍ ଶିଶୁମାନଙ୍କୁ ଆଣନ୍ତି । ସାତ ଆଠଜଣ ପିଲା ସେମାନଙ୍କର ବ୍ୟାଗ୍, ପାଣି ବୋତଲ ଆଜି ଧରି ରିକ୍ସା ଉପରେ ବସି ପଡ଼ନ୍ତି । ସେ ସେମାନଙ୍କର ପାଖରୁ ବ୍ୟାଗଗୁଡ଼ିକ ନେଇ ରିକ୍ସାର ଥିବା ଲୁହାରଡ଼ରେ ଝୁଲେଇ ଦିଅନ୍ତି । ପିଲାମାନେ ଠିକ୍‌ଭାବେ ବସିଛନ୍ତି କି ନାହିଁ, ସେଥିପ୍ରତି ଦୃଷ୍ଟି ଦିଅନ୍ତି । ଯଦି ସବୁକିଛି ଠିକ୍‌ଠାକ୍ ଥାଏ, ତେବେ ରିକ୍ସା ଅଙ୍କଲ କହନ୍ତି, ''ପିଲାମାନେ ! ବର୍ତ୍ତମାନ ରିକ୍ସା ଚାଲିବ । ସାବଧାନରେ ବସି ରହିବ । ଟିକିଏ ହଲଚଲ ହେଲେ ପଡ଼ିଯିବ । ଦେଖିବ ତୁମର ଅସାବଧାନତାରୁ ଯେମିତି ଦୁର୍ଘଟଣା ନ ହୁଏ । ସେପରି ହେଲେ ମୁଁ ଆଉ ନିଜକୁ ନିଜେ କ୍ଷମା କରିବିନି ।''

ପିଲାମାନେ ରିକ୍ସା ଅଙ୍କଲଙ୍କ କଥା ଶୁଣି ସମସ୍ୱରରେ କହି ଉଠନ୍ତି, ''ଅଙ୍କଲ୍! ତୁମେ ଜୋରରେ ରିକ୍ସା ଚଲାଅ। ଆମର କିଛି କ୍ଷତି ହେବନାହିଁ। ଆମେ ସମସ୍ତେ ତୁମକଥା ମାନି ସାବଧାନରେ ବସିଛୁ।''

ପିଲାମାନଙ୍କଠାରୁ ପ୍ରତିଦିନ ଏଇପରି ଦୁଇପଦ କଥା ଶୁଣିଲାପରେ ରିକ୍ସା ଅଙ୍କଲଙ୍କ ରିକ୍ସାଟି ଯାତ୍ରା ପଥରେ ଚାଲେ। ଭଲରାସ୍ତା ହେଲେ ସେ ନିଜେ ରିକ୍ସାରେ ବସି ପଡ଼ନ୍ତି। ଓ ପ୍ୟାଡେଲ ମାରି ରିକ୍ସାଟିକୁ ଆଗେଇ ନିଅନ୍ତି। ରାସ୍ତା ଉଠାଣିଆ ଥିଲେ, ସେ ଓହ୍ଲେଇପଡ଼ି ରିକ୍ସାଟିକୁ ହାତଦେଇ ଜୋରରେ ବୋହି ନେବାକୁ ଚେଷ୍ଟା କରନ୍ତି। ପିଲାମାନେ ଯେମିତି ଠିକ୍ ସମୟରେ ସ୍କୁଲରେ ପହଞ୍ଚି ପାରିବେ; ସେଥିପାଇଁ ସେ ସବୁଦିନେ ଦୃଷ୍ଟି ଦେଇଥାନ୍ତି।



ଦୀର୍ଘ ତିରିଶ ବର୍ଷ ହେଲା ଏଇ ରିକ୍ସା ଅଙ୍କଲଜଣକ ପିଲାମାନଙ୍କୁ ତାଙ୍କର ସେବା ଦେଇ ଆସୁଛନ୍ତି। ସେଥିପାଇଁ ସେ ରିକ୍ସାଅଙ୍କଲ ରୂପେ ସମସ୍ତଙ୍କ ପାଖରେ ପରିଚିତ। କି ଝଡ଼! କି ବତାସ!! ସେ ସବୁକୁ ଖାତିର ନକରି ସେ ପିଲାମାନଙ୍କ ଘରେ ପହଞ୍ଚିଯାଆନ୍ତି। ପିଲାମାନେ



ଯାଆନ୍ତୁ ବା ନ ଯାଆନ୍ତୁ ସେଥିପାଇଁ ତାଙ୍କର ଖାତିର ନଥାଏ । ସେ ଜଣାଇଦେବାକୁ ଚାହାନ୍ତି ଯେ ସେ ସବୁବେଳେ ପିଲାମାନଙ୍କ ସେବାରେ ଅଛନ୍ତି ।

ସେଥିପାଇଁ ଦୀର୍ଘ ତିରିଶ ବର୍ଷ ହେଲା କାହାରି ମୁହଁରୁ ବାହାରି ନାହିଁ ଯେ ରିକ୍ସା ଅଙ୍କଲ ତାଙ୍କ କର୍ତ୍ତବ୍ୟରେ କେବେ ତ୍ରୁଟି କରିଛନ୍ତି ।

ଶିଶୁ ବିଦ୍ୟାଳୟର ବାହାରେ ରିକ୍ସା ପହଞ୍ଚିଗଲେ ପିଲାମାନେ ରିକ୍ସାରୁ ତଳକୁ ଡେଇଁ ପଡ଼ନ୍ତି । ରିକ୍ସା ଅଙ୍କଲ୍ ପ୍ରତ୍ୟେକଙ୍କ ହାତକୁ ବ୍ୟାଗ ଓ ପାଣି ବୋତଲ ବଢ଼ାଇ ଦିଅନ୍ତି ।

ସେମାନଙ୍କୁ ସ୍କୁଲରେ ଛାଡ଼ି ଚାଲି ଆସନ୍ତି । ପୁଣି ସ୍କୁଲ ସରିବା ସମୟରେ ଯଥେଷ୍ଟ ଆଗରୁ ସ୍କୁଲରେ ପହଞ୍ଚି ଯାଆନ୍ତି ।

କାଳ କ୍ରମେ ରିକ୍ସା ଅଙ୍କଲଙ୍କ କର୍ତ୍ତବ୍ୟ ନିଷ୍ଠା ସଂପର୍କରେ ଆଖପାଖ ଅଞ୍ଚଳର ଲୋକେ ଜାଣିଲେ । ଏକଥା ସାମ୍ବାଦିକ ବାମାପଦ ବାବୁଙ୍କ କାନରେ ପଡ଼ିଲା । ଦିନେ ବାମାପଦ ବାବୁ ମନେ ମନେ ଭାବିଲେ "ମୁଁ ତ ମୋ ଜୀବନରେ ଅନେକ ବିଶିଷ୍ଟ ଲୋକଙ୍କ ସାକ୍ଷାତକାର ଆମ ସମ୍ବାଦପତ୍ର ପାଇଁ ନେଇଛି । ଆମର ଏଇ କର୍ତ୍ତବ୍ୟ ନିଷ୍ଠ ରିକ୍ସା ଅଙ୍କଲଙ୍କର ଏକ ସାକ୍ଷାତକାର ଆମ ସମ୍ବାଦପତ୍ରରେ ଦେଲେ ସେଥିରୁ ଲୋକେ ଜଣେ କର୍ତ୍ତବ୍ୟନିଷ୍ଠ ମଣିଷର ମନୋଭାବ ସଂପର୍କରେ ଜାଣିବେ । ସେଥିରୁ ଅନେକ କଥା ମଧ୍ୟ ଶିକ୍ଷା କରିବେ ।

ଦିନକର ଘଟଣା । ରିକ୍ସା ଅଙ୍କଲଙ୍କ ଦେହ ଭଲ ନଥାଏ । ତଥାପି ସେ କାହାକୁ କିଛି ନକହି ପୂର୍ବବତ୍ ପିଲାମାନଙ୍କୁ ନେଇ ଯଥାସମୟରେ ଶିଶୁ ବିଦ୍ୟାଳୟରେ ଛାଡ଼ିଲେ । ଦେହର ଥକ୍କା ମାରିବା ପାଇଁ ରିକ୍ସାଟିକୁ ଧରି ସ୍କୁଲର ଅନତିଦୂରରେ ଥିବା ଏକ ଝଙ୍କାଳିଆ ବରଗଛ ଛାଇର ଗାମୁଛାଟିଏ ପକାଇ ଗଡ଼ିପଡ଼ିଲେ ।

ଏଇ ସମୟରେ ତାଙ୍କୁ ଖୋଜି ଖୋଜି ସାମ୍ବାଦିକ ବାମାପଦବାବୁ ସେଠାରେ ଯାଇଁ ପହଞ୍ଚିଲେ ।

ସେ ରିକ୍ସା ଅଙ୍କଲଙ୍କୁ ହସି ହସି ପଚାରିଲେ, ''ଆପଣ ତ ଦୀର୍ଘ କେତେବର୍ଷ ହେଲା କେବଳ ପିଲାମାନଙ୍କ ସେବାରେ ଲାଗିଛନ୍ତି । ଆପଣଙ୍କ ରିକ୍ସାରେ ଆଉ କାହାକୁ ନେବା ମୁଁ କେବେ ଦେଖିନାହିଁ ।''

ବାମାପଦ ବାବୁଙ୍କ ପାଟିରୁ କଥା ନ ସରୁଣୁ ରିକ୍ସା ଅଙ୍କଲ ତାଙ୍କର ସ୍ୱଭାବ ସୁଲଭ ଭାଷାରେ ଆରମ୍ଭ କଲେ, ''ଏଇ କୁନି କୁନି ପିଲାମାନେ ହେଉଛନ୍ତି ମୋର ସର୍ବସ୍ୱ । ସେମାନଙ୍କୁ ଦେଖିଲେ ମୋର ଦେହ ଓ ମନ ହସିଉଠେ । ମୁଁ ଏ ବୁଢ଼ା ବୟସରେ ମଧ୍ୟ ଟୋକାଙ୍କ ଭଳି ଅନୁଭବ କରେ । ଯେତେ ପିଲା ରିକ୍ସାରେ ବସିଲେ ବି ମନ ମୋର ଦବେ ନାହିଁ । ଦେହର ସମସ୍ତ ଶକ୍ତି ଖଟାଇ ରିକ୍ସାଟିକୁ ଟାଣି ଟାଣି ସେମାନଙ୍କୁ ସ୍କୁଲରେ ପହଞ୍ଚାଇ ଦିଏ ।''

ତେବେ ?

'ତେବେ ଆଉ କ'ଣ ?' ବାମାପଦ ବାବୁ ପଚାରିଲା ଟିକିଏ ରହି ପୁଣି ଆରମ୍ଭ କଲେ, ''ଏତେ ପିଲାଙ୍କୁ କ'ଣ ରିକ୍ସାରେ ବସାଇ ନ ନେଲେ ଚଳନ୍ତା ନାହିଁ ?''

ସଙ୍ଗେ ସଙ୍ଗେ ରିକ୍ସା ଅଙ୍କଲ କହିଲେ, ''ଚଳିବ ନାହିଁ କାହିଁକି ବାବୁ ? ମୁଁ ବି ସେଇକଥା ଭାବୁଚି । ଯେତେ ମନା କଲେବି ତାଙ୍କ ବାପମାଆମାନେ ମାନୁ ନାହାଁନ୍ତି । କହୁଛନ୍ତି, ''ଆମେ ରିକ୍ସା ଅଙ୍କଲଙ୍କୁ ଛାଡ଼ି ଚଳି ପାରିବୁ ନାହିଁ । ତାଙ୍କଭଳି କ'ଣ ସହଜରେ ଆଉ ଜଣେ ମିଳିବେ ?''

ଏହା କହି ରିକ୍ସା ଅଙ୍କଲ ନୀରବ ରହିଲେ । ପୁଣି କିଛି ସମୟ ପରେ ଆରମ୍ଭ କଲେ, ''ବାବୁ ମୁଁ ଗୋଟିଏ କଥା ଭାବୁଚ, ଯାହାଦ୍ୱାରା ଆମ ରିକ୍ସାର ବୋଝ କମିଯିବ । ଦେଶର ବୋଝ ମଧ୍ୟ କମିଯିବ ?''

''ସେ କଥାଟି କ'ଣ ?''- ସାମ୍ବାଦିକ ବାମାପଦ ବାବୁ ପଚାରିଲେ ।

ରିକ୍ସା ଅଙ୍କଲ ଓଠରେ ହସ ଫୁଟାଇ କହିଲେ, ''ଏମାନଙ୍କ ବାପ ମା' ସିନା ନିଜ ପରିବାର ସଂଖ୍ୟା କଥା ଚିନ୍ତା କଲେ ନାହିଁ, ମାତ୍ର ମୁଁ ଭାବୁଛି ଏବେ ପାଠ ପଢୁଥିବା ଏ କୁନି ପିଲାମାନେ ଭବିଷ୍ୟତରେ ସେ କଥା ବୁଝି ପାରିବେ । ତେଣୁ ସେମାନେ ସେମାନଙ୍କ ଜୀବନ କାଳରେ ଅଧିକ ସନ୍ତାନ ସନ୍ତତି ଚାହିଁବେ ନାହିଁ ।''

ବାମାପଦ ବାବୁ ରିକ୍ସା ଅଙ୍କଲଙ୍କ ମୁହଁକୁ ଚାହିଁଲେ । ତାଙ୍କ କପାଳରେ ଲକ୍ଷ୍ୟକଲେ ପିଲାମାନଙ୍କ ଭବିଷ୍ୟତ ନେଇ ଚିନ୍ତାର ସ୍ପଷ୍ଟ ରେଖା । ଜଣେ ସାଧାରଣ ଶ୍ରମିକ ଶ୍ରେଣୀର ମଣିଷ ହେଉଛନ୍ତି ରିକ୍ସା ଅଙ୍କଲ । କେଡେବଡ଼ କଥାଟିଏ ସେ କହି ନଦେଲେ ସତେ । ଦେଶର ଜନସଂଖ୍ୟା ଓ ସମ୍ବଳର ବିକାଶ କଥା ମଧ୍ୟ ସେ ଚିନ୍ତା କରୁ ଅଛନ୍ତି ।

ତେଣୁ ସେ ତାଙ୍କୁ ପ୍ରଶ୍ନଟିଏ ପଚାରିଲେ, ''ସେ ଦିନ କେବେ ଆସିବ ବୋଲି ଆପଣ ଭାବୁଛନ୍ତି ?''

ରିକ୍ସା ଅଙ୍କଲ କହିଲେ, ''ଆପଣ ଅପେକ୍ଷା କରନ୍ତୁ । ସେ ଦିନ ଆଉ ବେଶୀ ଡେରି ନାହିଁ । ଆମ ଦେଶର ଭବିଷ୍ୟତ ପିତାମାତାମାନେ ଅଧିକ ସନ୍ତାନ ସନ୍ତତି ଚାହିଁବେ ନାହିଁ । ସେମାନେ ତାଙ୍କ ଜୀବନରେ ଦାୟିତ୍ୱସଂପନ୍ନ ନିଷ୍ପତ୍ତି ନେବେ ।''

ବାସ୍ ! ସେତିକି ହିଁ ଥିଲା ସାମ୍ବାଦିକ ବାମାପଦ ବାବୁଙ୍କ ପାଇଁ ଯଥେଷ୍ଟ ।

ସେ ରିକ୍ସା ଅଙ୍କଲଙ୍କୁ ଧନ୍ୟବାଦ ଜଣାଇ ସେଠାରୁ ଚାଲି ଆସିଲେ ।

ପରଦିନ 'ସମ୍ବାଦପତ୍ର'ରେ ରିକ୍ସା ଅଙ୍କଲଙ୍କ ସହ ବାମାପଦ ବାବୁଙ୍କ ସାକ୍ଷାତକାର ପ୍ରକାଶିତ ହୋଇଥିଲା ।

ସାକ୍ଷତକାରରେ ସାରକଥା ଥିଲା, ରିକ୍ସା ଅଙ୍କଲ ବି ଆମ ଦେଶର ଶିଶୁ ଓ ମାନବ ସମ୍ବଳର ବିକାଶ ସଂପର୍କରେ ଚିନ୍ତା କରନ୍ତି ।



# ଜେଜେଙ୍କ ବିଚାର

ସେ ସମୟରେ ଜେଜେ ସମ୍ବଲପୁରରେ ଥାଆନ୍ତି । ଚାକିରି ଜୀବନ ସହିତ ସମ୍ବଲପୁରର ପାଣି ପବନ ଓ ଲୋକଙ୍କୁ ଜେଜେଙ୍କୁ ଆପଣେଇ ନେଇଥାଆନ୍ତି । ସାଧାରଣ ଲୋକଙ୍କ ସହିତ ମିଶିବା ଓ କିଛି ଶିଖିବା ଜେଜେଙ୍କର ଏକରକମ ଅଭ୍ୟାସରେ ପରିଣତ ହୋଇଥାଏ । ତେଣୁ ସେଠାକାର ଲୋକେ ମଧ୍ୟ ତାଙ୍କୁ ସେମାନଙ୍କ ମଧ୍ୟରୁ ଜଣେ ବୋଲି ଭାବୁଥାନ୍ତି ।

ଆମେ ରହୁଥିବା 'ସାବିତ୍ରୀ ନିବାସ'ର ଆଖପାଖ ଭଡ଼ାଘରେ ବନବିଭାଗର କେତେକ କର୍ମଚାରୀ ରହୁଥାନ୍ତି । ସେମାନଙ୍କ ମଧ୍ୟରୁ ନାରୁ ସହିତ ଆମର ଘନିଷ୍ଠ ସଂପର୍କ ଥାଏ । ଦିନେ ନାରୁ ଆସି ଜେଜେଙ୍କୁ କହିଲା, ''ସାର୍, ମୁଁ ଆପଣଙ୍କ ପାଇଁ ଗୋଟିଏ ଶୁଆ ଛୁଆ ବଣରୁ ଆଣିଛି । ଏହା ଏତେ ଛୋଟ ଯେ ଏହାର ପର କଅଁଳି ନାହିଁ । ୟା'କୁ ଦୁଧଭାତ ଦେଇ ହାତରେ ଖୁଆଇବାକୁ ପଡ଼ିବ । ଆପଣଙ୍କ ଘରେ କୁନିକୁନି ପିଲାମାନଙ୍କୁ ଲାଳନପାଳନ କଲାଭଳି ଏଇ ଶୁଆଛୁଆଟିକୁ ପାଳିବାକୁ ପଡ଼ିବ ।''

ଜେଜେ ନାରୁ କଥାର ଅସଲ ଉଦ୍ଦେଶ୍ୟ ବୁଝିଗଲେ ।

ସେ ତାକୁ କହିଲେ, ''ନାରୁ! ତୁମେ ବଣର ପକ୍ଷୀଟିକୁ ବଣ ରାଇଜରୁ କାହିଁକି ଆଣିଲ ? ଯଦି ଆଣିଲ, ଆଉ କାହାକୁ ନ ଦେଇ ମୋ ପାଇଁ ଆଣିଛ ବୋଲି କହୁଛ କାହିଁକି ? ଆମେ ତ ଆମ ପିଲାମାନଙ୍କର

ଯତ୍ନ ଠିକ୍ ଭାବେ ନେଇ ପାରୁନାହୁଁ । ପୁଣି ପର ଉଠିନଥିବା, ଖାଇ ପାରୁନଥିବା ଶିଶୁ ଶୁଆଟିର ଯତ୍ନ ନେବା ଦାୟିତ୍ୱ ଆମ ଉପରେ ଥୋଉଛ କାହିଁକି ?''

ନାରୁ ଜେଜେଙ୍କର କଥା ଶୁଣି ଟିକିଏ ହସିଲା । କହିଲା, ''ସାର୍ ! ଆପଣ ମା'ଙ୍କୁ ଟିକିଏ ପଚାରନ୍ତୁ । ମୋର ବିଶ୍ୱାସ, ସେ ନାହିଁ କରିବେ ନାହିଁ । ଶୁଆଟିର ଯତ୍ନ ଅତି ଖୁସିରେ ନେବେ । ଆଉ ଆପଣଙ୍କ ଟିକି ଟିକି ନାତି ନାତୁଣୀଏ ଶୁଆଟିକୁ ଦେଖି ଖୁସି ହେବେ ।''

ନାରୁ ପାଟିରୁ କଥା ସରିନାହିଁ, ଜେଜେମା' ଆସି ସେଠାରେ ପହଞ୍ଚିଗଲେ । ସେ ନାରୁ ହାତରେ ଶିଶୁ ଶୁଆଟିକୁ ଦେଖି ଭାରି ଖୁସି ହୋଇଗଲେ । ହସି ହସି କହିଲେ, ''କ'ଣ ନାରୁ ! ତୁମେ ଏଇ ଛୁଆ ଶୁଆଟିକୁ ଆମ ପାଇଁ ଆଣିଚ ?''

ନାରୁ ଖୁସି ହୋଇ କହିଲା ''ହଁ ମା', ଆପଣଙ୍କ ପାଇଁ । ଆପଣ ଯଦି ନ ରଖିବେ, ତେବେ ଆଉ କାହାକୁ ଦେଇ ଦେବି ।''

ଜେଜେ ମା' କହିଲେ, ''ମୁଁ ରଖିବିନି ବୋଲି ତୁମକୁ କିଏ କହିଲା ?''

ନାରୁ କିଛି ନ କହି ଜେଜେଙ୍କ ଆଡ଼କୁ ଟିକିଏ ଚାହିଁଲା । ଜେଜେ ଦେଖିଲେ ଶୁଆ ରଖିବା ନରଖିବା କଥାଟା ପୁଣି ବୁଲି ବୁଲି ତାଙ୍କ ଆଡ଼କୁ ଆସୁଛି । ତେଣୁ ସେ ଏ ପ୍ରସଙ୍ଗରେ କିଛି ନ କହି ନୀରବ ରହିଲେ ।

ଏଣିକି ନାରୁ ଆଉ ଜେଜେଙ୍କ ହଁ ନାହିଁକୁ ଅପେକ୍ଷା କଲାନାହିଁ । ସିଧାସିଧା ଜେଜେମା'ଙ୍କ ହାତକୁ ଶୁଆଟିକୁ ବଢ଼ାଇଦେଲା ।

ଜେଜେ ମା ଶୁଆଟିକୁ ହାତକୁ ନେଇ ତା'ର ଦେହକୁ ଟିକିଏ ଆଉଁଶି ଦେଲେ । ସଙ୍ଗେ ସଙ୍ଗେ ଜେଜେଙ୍କ ଆଡ଼କୁ ଚାହିଁ କହିଲେ, ''ଖାଲି ବସି ଦେଖୁଛ କ'ଣ ? ଯାଅ, ଗୋଲବଜାରରୁ ଶୁଆ ପାଇଁ ଗୋଟିଏ ପଞ୍ଜୁରି

କିଣି ଆଣ । ଏଣେ ତେଣେ ଛାଡ଼ି ଦେଲେ ତାକୁ କାଣୀ ବିରାଡ଼ି ଖାଇଦେବ ଯେ ।''

ଜେଜେ ଜେଜେମାଙ୍କୁ ଯେତିକି ଡରନ୍ତି । ତାଙ୍କ କଥାକୁ ମଧ୍ୟ ସେତିକି ଖାତିର କରନ୍ତି । ତେଣୁ ସେ ସୁନା ପିଲାଟି ପରି ଚେୟାର ଉପରୁ ଉଠି ଠିଆ ହେଲେ ।

ଆଉ ପଞ୍ଜୁରିଟିଏ ଆଣିବା ପାଇଁ ସିଧା ସିଧା ଗୋଲ ବଜାର ଅଭିମୁଖେ ବାହାରିଗଲେ ।

ଶୁଆ ଶାବକଟିକୁ ସେହି ଦିନରୁ ନିଜ ହାତରେ ଜେଜେମା କ୍ଷୀର ଓ ତରଳ ଖାଦ୍ୟ ଖୁଆଇ ଦେଲେ । ସେ ଚିଁ ଚିଁ ହୋଇ ବଡ଼ ଆନନ୍ଦରେ ତାଙ୍କ ହାତରୁ ଖାଇଲା । ଜେଜେମା ବ୍ୟସ୍ତ ଥିଲାବେଳେ ବୋଉ ମଧ୍ୟ ତା'ର ଯତ୍ନ ନେଲା । ମଝିରେ ମଝିରେ ତାକୁ ଖୁଆଇ ଦେଲା ।

ଆମେ ଭାଇ ଭଉଣୀ ଦୁହେଁ ବେଳେ ବେଳେ ଥଟ୍ଟାକରି କଥାବାର୍ତ୍ତା ହେଉ ଯେ, ''ମମି ଓ ଜେଜେମା ଶୁଆଟିର ଏମିତି ଯତ୍ନ ନେଉଛନ୍ତି ଯେ ଆମର ଯତ୍ନ ପଛରେ ପଡ଼ି ଯାଉଅଛି ।''

ଆମ କଥାବାର୍ତ୍ତା ଦିନେ ଜେଜେମା ଶୁଣି ଦେଲେ । ସେ ଆମକୁ ଡାକି ହସି ହସି କହିଲେ, ''ମୋ ଗେହ୍ଲା ନାତି ନାତୁଣୀଏ ! ତୁମେ ବୁଝୁନ କାହିଁକି ଯେ ତୁମର ପାଟି କେବଳ ଖାଇବା ପାଇଁ ନାହିଁ । ସେଥିରେ ତୁମେ କଥା କହି ପାରୁଛ । ତୁମର ମନର ଭାବ ପ୍ରକାଶ କରି ପାରୁଛ । କିନ୍ତୁ ଶୁଆଛୁଆଟିର ପାଟିଥିଲେ ମଧ୍ୟ ସେ ତୁମଭଳି କହି ପାରୁନାହିଁ । ମାତ୍ର ସେ ବଡ଼ ହେଲେ ଆମର କଥାଶୁଣି କେତୋଟି ଶବ୍ଦ କହିପାରିବ । ସେଦିନ ତୁମେ ଭାରି ଖୁସି ହେବ । ମାତ୍ର ସବୁବେଳେ ଆମକୁ ତା'ର ମନଜାଣି ଯତ୍ନ ନେବାକୁ ପଡ଼ିବ । କାରଣ ସେ ନିରୀହ ପକ୍ଷୀଟିଏ ।''

ଆମେ ଶୁଆଟି ସଂପର୍କରେ ଏମିତି କହୁଥିବାରୁ ମନେ ମନେ ଲଜ୍ଜିତ ହେଲୁ ।



ଦିନ ପରେ ଦିନ ଗଡ଼ି ଚାଲିଲା । ଚାହୁଁ ଚାହୁଁ ତିନିବର୍ଷ ହେଲା ବେଳକୁ ଶିଶୁ ଶୁଆଟି କଥା କହିବାକୁ ଆରମ୍ଭ କଲା । ସେ ଜେଜେ, ଜେଜେ ମା', ବାପା ବୋଉ ବୋଲି ଉଚ୍ଚାରଣ କଲା । ବେଳେ ବେଳେ ଆମ ନାମ ମଧ୍ୟ ଧରି ଡାକିଲା । ଆମେ ଲକ୍ଷ୍ୟ କଲୁ ଯେ ସେ ମଣିଷ ଦେଖି ଚିହ୍ନି ପାରୁଛି । ଆମ ଘରେ ଯିଏ ଯାହାକୁ ଯେମିତି ଡାକୁଛି; ସେ ମଧ୍ୟ ସେମିତି ଡାକୁଛି ।

ଶୁଆଟିର କଥାବାର୍ତ୍ତା ଦେଖି ଆମର ଧାରଣା ହେଲା ଯେ ପକ୍ଷୀମାନଙ୍କର ମଧ୍ୟ ବୋଧଶକ୍ତି ଅଛି । ସେ ସଂପର୍କରେ ଜେଜେ ଓ ଜେଜେମା ମଧ୍ୟ ଆମ୍ଭମାନଙ୍କୁ ଅନେକ ଗଳ୍ପ ଓ କାହାଣୀ କହି ଧାରଣା ଦେଲେ ।

ହଠାତ୍ ଦିନେ ବାପା ଆଧାରୁ ଅଫିସ ଛାଡ଼ି ଘରେ ଆସି ପହଞ୍ଚିଲେ । ସେ କହିଲେ ଯେ ତାଙ୍କର ଭୁବନେଶ୍ୱରକୁ ବଦଳି ହୋଇଯାଇଅଛି । ସାତ ଆଠ ଦିନ ମଧ୍ୟରେ ନୂଆ ସ୍ଥାନରେ ଯୋଗ ଦେବାକୁ ପଡ଼ିବ ।

ଭୁବନେଶ୍ୱରରେ ଆମର ନିଜଘର ଥିଲା । ତେଣୁ ଆମେ ସମସ୍ତେ ଖୁସି ହେଲୁ । ଜେଜେ ଓ ଜେଜେ ମା' ଜିନିଷ ପତ୍ର ସଜାଡ଼ି ପେଟିରେ ରଖିବାକୁ ଲାଗି ପଡ଼ିଲେ । ଆମେ ମଧ୍ୟ ସେମାନଙ୍କୁ କାମରେ ସାହାଯ୍ୟ କଲୁ ।

ଶେଷରେ ଶୁଆଟି ଆମ ସାଥିରେ ଅଣାଯିବ କି ନାହିଁ, ସେଥିପାଇଁ ଜେଜେ ଓ ଜେଜେ ମା'ଙ୍କ ମଧ୍ୟରେ ବାଦ ବିବାଦ ଉଠିଲା ।

ଜେଜେ କହିଲେ, ''ସମ୍ବଲପୁରର ପାଣି ପବନରେ ବଢ଼ିଥିବା ଏଇ ଶୁଆଟିକୁ ଆମେ ଭୁବନେଶ୍ୱର ନେବା ନାହିଁ।'' ମାତ୍ର ଜେଜେ ମା' ଆଣିବାକୁ କହିଲେ।

ଶୁଆଟିକୁ ସେଠାରେ ଛାଡ଼ି ଆସିବାକୁ ଆମେ ଭାଇ ଭଉଣୀ ଦୁଇଜଣ ଚାହୁଁ ନଥିଲୁ। ଆମେ ଭାବିଥିଲୁ ଜେଜେ ମା' ନିଶ୍ଚିତଭାବେ ସାଥିରେ ନେଇ ଆଣିବାକୁ କହିବେ। ମାତ୍ର ଆମକୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା ଯେ ଯେଉଁ ଜେଜେମାଆ ଜେଜେଙ୍କ ଇଚ୍ଛା ବିରୋଧରେ ଶୁଆଟିକୁ ରଖିଥିଲେ ସେ ଜେଜେଙ୍କ ପ୍ରସ୍ତାବରେ ପୁଣି ରାଜି ହୋଇଗଲେ ଏବଂ କହିଲେ, ''ଶୁଆଟିକୁ ଆମେ ଭୁବନେଶ୍ୱର ନ ନେଇ ଉଡ଼େଇ ଦେବା।'' ଜେଜେ କହିଲେ, ''ନା, ଆମେ ସେମିତି କିଛି କରିବା ନାହିଁ। ସେ ସବୁ କଥା ଆମେ ନାରୁ ଉପରେ ଛାଡ଼ିଦେବା। ସେ ଛୁଆଟି ବେଳୁ ଶୁଆଟିକୁ ଆଣି ଆମକୁ ନେଇଛି। ତେଣୁ ସେ ନିଜେ ରଖୁ କି ଉଡ଼େଇ ଦେଉ ସେଥିରେ ଆମର ଚିନ୍ତା କରିବାରେ କିଛି ନାହିଁ।''

ଶେଷରେ ନାରୁକୁ ଡକାଗଲା।

ନାରୁ ଆସି ଜେଜେଙ୍କୁ ସିଧା ସିଧା କହିଲା,''ସାର୍! ଆପଣଙ୍କ କୌଣସି କଥା ମୋର ମନକୁ ପାଉନାହିଁ। ପିଲାଟିବେଳୁ ଶୁଆଟିକୁ ଆପଣମାନେ ପଞ୍ଜୁରି ମଧରେ ରଖିଲେ। ଉଡ଼ାଇ ଦେଲେ ସେ ସିନା ଉଡ଼ିଯିବ, କିନ୍ତୁ ଅଳ୍ପବାଟ ଯାଇ ପଡ଼ି ମରିଯିବ। ଯଦି ନ ଉଡ଼େ ଗଛ ଡାଳରେ ବସି ଆପଣ ଓ ଆପଣଙ୍କ ପରିବାରର ଲୋକଙ୍କ ନାମଧରି ଡାକିବ। ତାକୁ ଅନ୍ୟ ପକ୍ଷୀମାନେ ସହଜରେ ଆପଣେଇ ନେବେ ନାହିଁ। ତା'ର ଶତ୍ରୁ ହୋଇ ଯିବେ।''

ଜେଜେ ମା' ନାରୁ କଥା ଶୁଣି କହିଲେ, ''ନାରୁ, ତା'ହେଲେ ତୁମେ ଶୁଆଟିକୁ ରଖ। ଖୁବ୍ ଭଲ ହେବ।''

ନାରୁ ସଙ୍ଗେ ସଙ୍ଗେ ଜେଜେ ମାଆଙ୍କ ପ୍ରତି ଲକ୍ଷ୍ୟକରି କହିଲା, ''କି କଥା କହୁଚ ଜେଜେ ମା'! ଜେଜେ ପ୍ରଥମେ ଶୁଆଟିକୁ ରଖିବାକୁ ମନା କରୁଥିଲେ। ଆପଣ ରଖିବାକୁ ରାଜି ହେଲେ। ଶୁଆଟି ଆପଣଙ୍କ ପରିବାରର ହୋଇଗଲା। ନାତି ନାତୁଣୀଙ୍କ ସହିତ ଖେଳିଲା, ବୁଲିଲା। ଆପଣମାନେ ମୋ ପାଖରେ ଛାଡ଼ି ଗଲେ ସେ ଆପଣମାନଙ୍କୁ ଝୁରି ଝୁରି ମରିଯିବ।''

ଏଥରକ ଜେଜେ ମା' ଧର୍ମ ସଂକଟରେ ପଡ଼ିଲେ।

ଜେଜେ ଜେଜେ ମାଆଙ୍କୁ କହିଲେ, ''ନାରୁ ଯାହା କହୁଛନ୍ତି ସତ। ଆଉ କୌଣସି ବିକଳ୍ପ ଚିନ୍ତା ନକରି ଆମେ ଶୁଆଟିକୁ ଆମ ସାଥିରେ ଭୁବନେଶ୍ୱର ନେଇଯିବା।''

ଜେଜେଙ୍କ କଥା ଶୁଣି ଆମେ ସମସ୍ତେ ଖୁସି ହେଲୁ। ଜେଜେ ତାଙ୍କ ସିଦ୍ଧାନ୍ତ ବଦଳାଇଥିବା ହେତୁ ଧନ୍ୟବାଦ ଜଣାଇଲୁ।

ସମ୍ବଲପୁରରୁ ଭୁବନେଶ୍ୱର ଆସିବା ଦିନ ଆମେ ଶୁଆଟିକୁ ଧରି ଜେଜେ ଜେଜେମାଙ୍କ ପାଖରେ ବସି ପଡ଼ିଲୁ।

ବାଟରେ ଆସିଲା ବେଳେ, ଶୁଆଟି ପୂର୍ବପରି ମନ ଖୁସିରେ ଜେଜେ ଜେଜେ ମାଆ ଡାକୁଥିଲା। ମଝିରେ ମଝିରେ ମଧ୍ୟ ଆମ ନାମ ଧରି ଡାକୁଥିଲା। ଆମ ସହିତ ଆମ ଘରର ପୋଷା ଶୁଆଟି ଥିବା ହେତୁ ଆମ ସମସ୍ତଙ୍କର ମନ ଖୁବ୍ ଖୁସି ହେଉଥିଲା।

ବାଟରେ ଆମେ ଜେଜେଙ୍କୁ ପଚାରିଲୁ, ''ଜେଜେ! ଆପଣ ତ ପ୍ରଥମେ ଶୁଆଟିକୁ ଆଣିବାକୁ ଚାହୁଁ ନଥିଲେ। ଜେଜେ ମା ମଧ୍ୟ ଆପଣଙ୍କ କଥାରେ ରାଜି ହେଲେ। କିନ୍ତୁ ସହଜରେ ନିଜର ବିଚାର ବଦଳାଉନଥିବା ଜେଜେ କିପରି ନାରୁ କଥାରେ ନିଜର ବିଚାର ବଦଳାଇଦେଲେ?''

ଜେଜେ ହସି ହସି କହିଲେ, ''ଏହାର ଉତ୍ତର ଅତି ସରଳ। ବଣର ପକ୍ଷୀଟିକୁ ବଣରୁ ଆଣିବା ନାରୁର ପକ୍ଷେ ଯେତିକି ଅନ୍ୟାୟ ଥିଲା, ଆମେ

ତାକୁ ବନ୍ଧନ ମଧ୍ୟରେ ରଖିବା ମଧ୍ୟ ଆମ ପାଇଁ ସେତିକି ଭୁଲ କାର୍ଯ୍ୟଟିଏ ଥିଲା । ପକ୍ଷୀ କି ମଣିଷ ସମସ୍ତେ ସ୍ୱାଧୀନତା ଚାହାଁନ୍ତି । ମୁଁ ଜାଣିଥିଲି ନାରୁଠାରୁ ଶୁଆଟିକୁ ରଖିବା ଆମର ଏକ ଠିକ୍ କାମ ନଥିଲା । ତା'ପରେ ଶୁଆଟି ଆମ ପରିବାର ସହିତ ଦୀର୍ଘ କେତେ ବର୍ଷ ଚଳିବା ପରେ ତାକୁ ନାରୁ ପାଖରେ ଛାଡ଼ି ଆସିବା ମଧ୍ୟ ଆମର ଠିକ୍ ଚିନ୍ତାଧାରା ନଥିଲା । ନାରୁ କଥାନୁଯାୟୀ ସେ ନିଶ୍ଚିତ ଭାବେ ଆମକୁ ଝୁରିଥାନ୍ତା । ହୁଏତ ଅଳ୍ପଦିନ ମଧ୍ୟରେ ଆମକୁ ଝୁରିଝରି ମରିଯାଇଥାନ୍ତା । ତା'ର ଅନୁପସ୍ଥିତି ମଧ୍ୟ ତୁମ ସମସ୍ତଙ୍କ ମନ ଉପରେ ଊଣା ଅଧିକେ ପଡ଼ିଥାନ୍ତା । ସେଥିପାଇଁ ମୁଁ ମୋର ବିଚାର ବଦଳେଇ ଦେଲି ।



ଜେଜେଙ୍କ କଥାରୁ ସେ ଆମକୁ ବୁଝାଇ କହିଥିବା ବିଷୟବସ୍ତୁର ମହତ୍ତ୍ୱ ଆମେ ଅତି ସହଜରେ ବୁଝିପାରିଲୁ ।

ପଶୁ ପକ୍ଷୀଙ୍କୁ ପୋଷା ମନାଇ ତାଙ୍କର ସ୍ୱାଧୀନତା ଅପହରଣ କରି, ବିପଦରେ ପକାଇ ଦେବା କେତେ କଷ୍ଟକର ବ୍ୟାପାର, ତାହା ଆଉ ଆମକୁ ଅଛପା ରହିଲା ନାହିଁ ।

ଆମ ମନକଥା ଜାଣି ଜେଜେ କହିଲେ, 'ପିଲାଏ ! ଆମର ଯେମିତି ସ୍ୱାଧୀନତା ଦରକାର ସେମିତି ପଶୁ ପକ୍ଷୀମାନଙ୍କର ମଧ୍ୟ ଦରକାର । ତେଣୁ ବୁଦ୍ଧିମାନ ଲୋକେ ସବୁବେଳେ ସମସ୍ତଙ୍କର ସ୍ୱାଧୀନତା ସୁରକ୍ଷିତ ରଖିଥାନ୍ତି । ସେ ପଶୁ ହେଉ ବା ପକ୍ଷୀ ହେଉ ।

●

# ମମତାର ମନ

ସେଦିନ ପଢ଼ାଘରେ ବସିଥାନ୍ତି ସୁରେଶ ବାବୁ । ମନସ୍ତତ୍ତ୍ୱର ଏଇ ଅଧ୍ୟାପକ ଜଣକ ପିଲାର ମନ ଉପରେ ଗବେଷଣାକରି ଉଚ୍ଚତର ଡିଗ୍ରୀ ହାସଲ କରିଛନ୍ତି । ସେଥିପାଇଁ ତାଙ୍କୁ ବିଭିନ୍ନ ସ୍ତରର ଲୋକେ ବେଶ୍ ଖାତିର କରନ୍ତି । ସମ୍ମାନ ମଧ୍ୟ ଜଣାନ୍ତି । ଘରେ ଆବଶ୍ୟକ ସ୍ଥଳେ କିଛି ପିଲାମାନଙ୍କୁ ଧରି ମନସ୍ତତ୍ତ୍ୱ ସଂପର୍କୀୟ ପରୀକ୍ଷା ନିରୀକ୍ଷା ମଧ୍ୟ କରିଥାନ୍ତି ।

ଦିନେ ସୁରେଶ ବାବୁ ତାଙ୍କର ପରବର୍ତ୍ତୀ ଗବେଷଣାର ବିଷୟବସ୍ତୁ କ'ଣ ହେବ ଚିନ୍ତା କରୁଥାନ୍ତି । ଏଇ ସମୟରେ ପଢ଼ାଘର ମଧ୍ୟକୁ ପଶି ଆସିଲା ତାଙ୍କ ଚାରିବର୍ଷର କୁନି ଝିଅ ମମତା । କହିଲା, 'ବାପା ! ବାପା ! ତୁମେ ଜାଣିଲଣି ମୁଁ ଏବେ କମ୍ପୁଟର ଚଳାଇ ଓଡ଼ିଆ ନର୍ସରୀ ରାଇମ୍ ସେଥିରୁ ବାହାର କରି ଗାଇ ପାରୁଛି ।''

ଝିଅର କଥା ଶୁଣି ସୁରେଶ ବାବୁ କହିଲେ, ''ବେଶ୍ ଭଲ କଥା । ସେଇଥିପାଇଁତ ମୁଁ କମ୍ପ୍ୟୁଟରରେ ଭଲ ଭଲ ନର୍ସରୀ ରାଇମ୍ ତୋ ପାଇଁ ସାଇତି ରଖିଛି । ଯେତେବେଳେ ଚାହୁଁଚୁ, ସେଗୁଡ଼ିକୁ କମ୍ପ୍ୟୁଟର ଚଳାଇ ବାହାର କରିବୁ । ଯେମିତି ବୋଲାଯାଉଛି, ସେମିତି ବୋଲିବୁ ।'' ମାତ୍ର ଏସବୁ କିପରି ବାହାର କରାଯିବ, ମୁଁ ତୋତେ ଶିଖାଇନାହିଁ । ତୁ କିପରି ସେ ସବୁ ଏତେ ଜଲଦି ଶିଖିଗଲୁ ।

ଅତି ଖୁସି ହୋଇ ମମତା କହିଲା, ''ତୁମେ ଯେତେବେଳେ କମ୍ପ୍ୟୁଟର ଚଳାଇ ଗୀତ ଗୁଡ଼ିକ ବାହାର କର, ମୁଁ ସେତେବେଳେ ତୁମ

ଚାଳନାକୁ ଲକ୍ଷ୍ୟକରେ । ତୁମେ କିପରି କମ୍ପ୍ୟୁଟରକୁ ଅନ୍ କର, ମାଉସ୍ ଚଳାଇ ଗୀତ ଗୁଡ଼ିକ ଥିବା ସ୍ଥାନକୁ କ୍ଲିକ୍ କର ସେ ସବୁ ଦେଖି ଦେଖି ତୁମଠାରୁ ଶିଖି ଯାଇଛି ।''

କୁନି ଝିଅଟିକୁ ଅତି ଆନନ୍ଦରେ କୋଳକୁ ଟେକିନେଲେ ସୁରେଶ ବାବୁ । କହିଲେ, ''ବେଶ୍ ଭଲକଥା ଏମିତି ପିଲାଟିବେଳୁ ଅନେକ କଥା ଦେଖି ଶିଖିବାକୁ ପଡ଼ିଥାଏ ।''

ସୁରେଶ ବାବୁଙ୍କ କଥା ସରୁ ସରୁ ମମତା କହିଲା, ''ବାପା, ତୁମକୁ ଡାଇନୋସର ଛବି ଆଙ୍କି ଆସିବ ?''

ସୁରେଶ ବାବୁ ସଙ୍ଗେ ସଙ୍ଗେ କହି ଉଠିଲେ, ''ଡାଇନୋସୋର୍ ! ଆରେ ବାବାରେ ! ଏତେ ବଡ଼ ଜୀବ !! ତା'ର ପୁଣି ଛବି ମୁଁ ଆଙ୍କି ପାରିବି ! ନା'ମା ମୋତେ ଆଉ ସେ ଛବି ଆଙ୍କିବା କଥା କହନି ।''

ବାପାଙ୍କ ମୁହଁରୁ ଯେମିତି ଏଇ କେଇପଦ କଥା ଶୁଣିବା ପାଇଁ ମମତା ଚାହିଁ ରହିଥିଲା । ସେ ହସି ହସି ଗଡ଼ିଗଲା । ତା'ର ଡ୍ରଇଁଖାତା ଆଣି ଦେଖାଇ କହିଲା, ''ବାପା ! ଦେଖ ମୁଁ କେମିତି ମୋ ଖାତାରେ ଡାଇନୋସରର ଛବି ଆଙ୍କିଛି । ଆମ ମିସ୍ ଆମକୁ ଏ ଛବି ଆଙ୍କିବା କଥା ଶିଖାଇ ଦେଇଥିଲେ । ତେଣୁ ମୁଁ ଅତି ସହଜରେ ଏଇ ବିରାଟ ଜୀବଟିକୁ ଛୋଟିଆ କରି ଆଙ୍କିପାରିଛି ।''



ଘର ନିକଟସ୍ଥ ଖେଳ ସ୍କୁଲରେ ପଢୁଥିବା କୁନି ଝିଅର ମୁହଁକୁ ଲକ୍ଷ୍ୟକଲେ ସୁରେଶ ବାବୁ । ନୂଆ ନୂଆ ଶିକ୍ଷଣ ଅନୁଭୂତିକୁ ନେଇ ସେ ନୂଆ ନୂଆ ପାଠପଢା

କାମ କରି ପାରୁଛି । ସେଥିରେ ତା' ମନରେ କେତେ ଆଗ୍ରହ ଓ ଉଦ୍ଦୀପନା ସତେ ! ସେଇଥିପାଇଁ ଦଣ୍ଡ ନ ଦେଇ ପିଲାଙ୍କୁ ବୁଝେଇ ଶୁଝେଇ ପାଠ ପଢ଼ାଇବାକୁ କୁହାଯାଉଛି । ଦଣ୍ଡ ଦେଲେ ତା'ର ଶୈଶବ ଆହତ ହେବ । ମନର ଆଗ୍ରହ ଭାଙ୍ଗିଗଲେ ସେ ଆଉ ନୂଆକାମ ହାତକୁ ନେବ ନାହିଁ ।

ଏମିତି ଏକ ମୁକ୍ତ ପରିବେଶରେ ମମତାର ପାଠ ପଢ଼ା ଚାଲିଲା ।

ମାତ୍ର କିଛି ଦିନ ପରେ ସୁରେଶ ବାବୁ ଲକ୍ଷ୍ୟକଲେ ଯେ ମମତା କାହାକୁ କିଛି କହୁନାହିଁ । କୌଣସି ନୂଆ କଥା ଜାଣିଲେ ସେ ସଂପର୍କରେ ମଧ୍ୟ ତାଙ୍କ ସହିତ ଆଲୋଚନା କରୁନାହିଁ । ଝିଅର ଏପରି ମାନସିକ ବ୍ୟତିକ୍ରମ ଦେଖି ଦିନେ ସୁରେଶ ବାବୁ ତାକୁ ପଚାରିଲେ, ''ମମତା ! ତୁ କାହିଁକି ଆଗଭଳି ତୋ ଛବି ଖାତା ମୋତେ ଦେଖାଉନାହୁଁ । କ'ଣ ଡାଇନୋସରର ଛବି ଆଙ୍କି ଏବେ ତାକୁ ଡରି ଗଲୁକି ?'' ମମତା ହସି ହସି କହିଲା, ''ନାହିଁ ବାପା, ମୁଁ ଖୁସି ହୋଇ ଅନେକ କଥା ନିଜେ ନିଜେ କରି ଦେଉଛି । ସେଥିରେ ମୋର ଭୁଲ ହୋଇଯାଉଛି ।''

ତା' ହେଲେ ମିସ୍ ତୁମକୁ ଗାଳି ଦେଇଛନ୍ତି ।'' ସୁରେଶ ବାବୁ କହିଲେ ।

ସେଇ ସମୟରେ ଘର ଭିତରକୁ ପଶି ଆସିଲେ ମାମୁନିର ମାଆ । ସେ ବାପ ଝିଅଙ୍କ କଥାବାର୍ତ୍ତାରେ ବାଧା ଦେଇ କହିଲେ, ''ମିସ୍ କାହିଁକି ତାକୁ କିଛି କହିବେ ?''

''ତା'ହେଲେ ତୁମେ ତାକୁ କିଛି କହିଚ, ସୁରେଶ ବାବୁ କହିଲେ ।

ସଙ୍ଗେ ସଙ୍ଗେ ମାମୁନିର ମାଆ କହିଲେ, ''କହିବିନି ? ତୁମେ ଜାଣିଛ ସେ କ'ଣ କରିଛି ? ଦୁଇଦିନ ତଳେ ସେ ନୂଆ ଦାନ୍ତ ଘଷା ପାଉଡରଟିକୁ ଖୋଲି ଆମ ସୋଫାସେଟ୍‌ରେ ବୋଳି ନଷ୍ଟ କରିଦେଇଛି । ଦେଖିଲ ତା'ର ସାଧାରଣ ବୁଦ୍ଧି ଅଭାବରୁ ଆମର କି କ୍ଷତି ହେଲା ?''

ସୁନନ୍ଦା ଦେବୀଙ୍କ କଥାଶୁଣି ସୁରେଶ ବାବୁ ଟିକିଏ ହସିଲେ । ପୁଣି ଆରମ୍ଭ କଲେ, ''ନିଶ୍ଚୟ ତ ତୁମର ସୋଫାସେଟ୍‌ଟି ଖରାପ ହେଲା । ନୂଆ କଣା ଦାନ୍ତଘଷା ପାଉଡରଟି ନଷ୍ଟ ହେଲା । ଆମକୁ କିଛି ଆର୍ଥିକ କ୍ଷତି ମଧ୍ୟ ସହିବାକୁ ପଡ଼ିଲା ।''

''ସେଇକଥା ଏଣିକି ତୁମେ ତୁମ ଝିଅକୁ ବୁଝାଅ'', ସୁନନ୍ଦା ଦେବୀ କହିଲେ ।

ସଙ୍ଗେ ସଙ୍ଗେ ସୁରେଶ ବାବୁଙ୍କ ମୁଖମଣ୍ଡଳ ଟିକିଏ ଗମ୍ଭୀର ହୋଇ ଆସିଲା ।



ସେ ସୁନନ୍ଦା ଦେବୀଙ୍କ ପ୍ରତି ଲକ୍ଷ୍ୟକରି କହିଲେ, ''ତୁମେ ଘଟଣାଟିକୁ ଯେମିତି ଭାବୁଛ ତାହା ସେମିତି ନୁହଁ । ସାଧାରଣତଃ ପିଲାମାନେ ସ୍ୱଜନଶୀଳ । ସେମାନେ ନୂଆ ନୂଆ କଥାମାନ ନିଜେ କରି ଦେଖାଇବାକୁ ଚାହିଁଥାନ୍ତି । ଆଗରୁ ମୁଁ ମମତାକୁ ସେ ଏପରି କାହିଁକି କଲା ବୋଲି ପଚାରିସାରିଛି । ସେ କ'ଣ କହିଲା, ତୁମେ ଜାଣ ?''

''କ'ଣ କହିଲା ?'' ଆଗ୍ରହର ସହିତ ସୁନନ୍ଦା ଦେବୀ ପଚାରିଲେ ।

''ସେ କହିଲା ମାଆ ବିଭିନ୍ନ ଉପାୟରେ ଘର ସଫା କରୁଛନ୍ତି । ମୁଁ ଭାବିଲି ଦାନ୍ତଘଷା ପାଉଡରଟି ଯଦି ଦାନ୍ତସଫା କରୁଛି, ତେବେ ତାକୁ ସୋଫାର କାଠରେ ଘଷି ଦେଲେ ଆପେ ଆପେ ସୋଫାସେଟ୍‌ଟି ସଫା

ହେବ । ଚକ୍‌ମକ୍ କରିବ । ମା’ ମୋତେ ପ୍ରଶଂସା କରିବେ’’- କହିଲେ ସୁରେଶ ବାବୁ । ନିଜେ ସବୁକଥା ବିଚାର ନକରି ଅଡୁଆରେ ପଡ଼ି ଯାଇଛନ୍ତି ଭାବି ସୁନନ୍ଦା ଦେବୀ କହିଲେ, ‘‘ଓଃ ! ଏଇ କଥା । ମୁଁ କ’ଣ ତୁମ ଭଳି ପିଲାର ମନ ଜାଣି ପାରୁଚି । ହୁଏତ ଶିଶୁ ମନସ୍ତତ୍ତ୍ୱ ପଢ଼ିଥିଲେ ହୋଇଥାନ୍ତା !’’

ସଙ୍ଗେ ସଙ୍ଗେ ସୁରେଶବାବୁ କହିଲେ, ‘‘ଦେଖ ସୁନନ୍ଦା ! ଶିଶୁର ଏକ ମନଅଛି । ତା’ର ମନକୁ ବୁଝି କାମ କରିବା ବଡ଼ ମାନଙ୍କର କର୍ତ୍ତବ୍ୟ । ସେମାନଙ୍କଠାରୁ ସ୍ନେହ ଶ୍ରଦ୍ଧା ପାଇଲେ ସେମାନେ ଚାରାଗଛଟି ବଡ଼ ହେଲାଭଳି ବଡ଼ ହେବେ । ସେମାନଙ୍କୁ ଦଣ୍ଡ ଦେଲେ ସେମାନେ ନଷ୍ଟ ହେବେ । ସେଥିପାଇଁ ବଡ଼ ମଣିମାନେ ଶିଶୁକୁ ଦଣ୍ଡ ନ ଦେବାକୁ କହିଛନ୍ତି । ଯାହା ବୁଝେଇ ଶୁଝେଇ କହିଲେ ହେବ, ସେଥିପାଇଁ ଦଣ୍ଡ ଦେବାର କୌଣସି ଆବଶ୍ୟକତା ନାହିଁ ।’’

ସୁନନ୍ଦା ଦେବୀ ଚାହିଁଲେ ସ୍ୱାମୀ ସୁରେଶବାବୁଙ୍କ ମୁହଁକୁ । ତାଙ୍କର ମୁଖ ମଣ୍ଡଳରେ ମନସ୍ତତ୍ତ୍ୱ ଅଧ୍ୟାପକର କୌଣସି ଛାପ ନଥିଲା । ଚିନ୍ତାଧାରା ନିତାନ୍ତ ଶିଶୁସୁଲଭ ଥିଲା ।

ସେଥିପାଇଁ ସେ ମନେ ମନେ ଗର୍ବିତ ହେଉଥିଲେ ଏପରି ଜଣେ ବିଜ୍ଞ ସ୍ୱାମୀ ପାଇଥିବା ହେତୁ ଆଉ ସେଦିନଠାରୁ ମମତାକୁ ତା’ର ମନ ଅନୁସାରେ ଗଢ଼ି ତୋଳିବାକୁ ପ୍ରତିଜ୍ଞା କରିଥିଲେ ।



# ନୂଆ ପ୍ରଧାନ ଶିକ୍ଷକ



ଆମ ଗାଆଁ ପ୍ରାଥମିକ ବିଦ୍ୟାଳୟରେ ମୋର ପାଠପଢ଼ା ସରିଗଲା । ବାପା ଦିନେ ମୋତେ ଡାକି କହିଲେ, ''ରଘୁରେ ! ଯାହାହେଉ ତୁ ଭଲରେ ଭଲରେ ପଞ୍ଚମଶ୍ରେଣୀଟା ପାଶ୍ କରିଗଲୁ । ମୁଁ ତ ମଲିମୁଣ୍ଡିଆ ଲୋକ । ଭାବୁଥିଲି ତୋର ପାଠ ପଢ଼ା ଏତିକିରେ ବନ୍ଦ କରିଦେବି । ତୁ ମୋତେ ଚାଷବାସରେ ଟିକିଏ ସାହାଯ୍ୟ କରିବୁ । କିନ୍ତୁ ଆଜିକାଲି ଯୁଗ ଯେମିତି ଆଗେଇଛି, ତୋତେ ନ ପଢ଼େଇଲେ ତୁ ପଛେଇଯିବୁ । ଯାହା କଷ୍ଟ ହେଉ ପଛେ ମୁଁ ତୋତେ ପଢ଼ାଇବି । ଅତି କମ୍‌ରେ ତୁ ହାଇସ୍କୁଲ ପାଠଟା ପଢ଼ିଦେଲେ ମୋ ମନ ଟିକିଏ ଶାନ୍ତି ପାଇବ ।''

ବାପାଙ୍କ ମୁହଁକୁ ମୁଁ ବଲବଲ ହୋଇ ଚାହିଁ ରହିଲି । କ'ଣ ପାଇଁ ବାପା ଏକଥା କହୁଛନ୍ତି ସହଜରେ ବୁଝି ପାରିଲି ନାହିଁ । ମୁଁ ତ କେବେ ପାଠ ପଢ଼ିବି ନାହିଁ ବୋଲି ବାପାଙ୍କୁ କହିନାହିଁ । ତେବେ ମୋତେ ପଢ଼ାଇବା ନ ପଢ଼େଇବା କଥା ଉଠୁଛି କାହିଁକି ?

ମୁଁ କିଛି ସମୟ ନୀରବ ରହିଲି ।

ବାପାଙ୍କୁ ପଚାରିଲି, ବାପା ! ମୁଁତ ପାଠ ପଢ଼ିବି ନାହିଁ ବୋଲି ତ ତୁମକୁ କେବେ କହି ନାହିଁ । ତେବେ ତୁମେ ଏପରି କାହିଁକି କହୁଚ ? ମୁଁ ହାଇସ୍କୁଲରେ ପାଠ ପଢ଼ିଲେ ତୁମେ କ'ଣ ମୋର ପାଠପଢ଼ା ଖର୍ଚ୍ଚ ତୁଲାଇ ପାରିବ ନାହିଁ ?''

ବାପା ହସି ହସି କହିଲେ, ''ନା'ରେ ରଘୁ ! ତୁ ସେମିତି ଭାବନା । ତୋ ପାଠ ପଢ଼ାରେ ବା କେତେ ଟଙ୍କା ଲାଗିବ । ମୁଁ ଯୋଗାଡ଼ କରିଦେବି ।

କେବଳ ତୋ ମନରେ ପାଠ ପଢ଼ାପ୍ରତି ଆଗ୍ରହ ଅଛି କି ନାହିଁ, ତାହା ପରଖୁଥିଲି ।''

ମୁଁ ବାପାଙ୍କୁ କଥା ଦେଇ କହିଲି, ''ବାପା! ତୁମେ ବୋଧହୁଏ ଭାବୁଛ ମୁଁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ମନ ଦେଇ ପାଠ ପଢୁ ନଥିଲି । ମାତ୍ର ମୋର ଏବେ ଟିକେ ବୁଝିବାଶକ୍ତି ଆସି ଗଲାଣି । ମୁଁ ହାଇସ୍କୁଲ ସ୍ତର ପାଠ ପଢ଼ାରେ କେବେ ଅବହେଳା କରିବି ନାହିଁ । ମନଧ୍ୟାନ ଦେଇ ପଢ଼ିବି ।''

ମୋ କଥା ଶୁଣି ବାପା ଟିକିଏ ଖୁସି ହେଲା ଭଳି ମୋତେ ଲାଗିଲା । ମାତ୍ର ସେ ତାଙ୍କର ଖୁସିକୁ ମୋ ଆଗରେ ସିଧା ପ୍ରକାଶ କଲେ ନାହିଁ । କହିଲେ, ''ହଉ! ଆଗାମୀ ସୋମବାର ଦିନ ଆମ ଗ୍ରାମ ନିକଟସ୍ଥ ହାଇସ୍କୁଲରେ ନାମ ଲେଖାଇଦେବି । ଆମେ ଦୁଇଜଣ ସାଙ୍ଗ ହୋଇଯିବା । ତୋତେ ମଧ୍ୟ ସାରମାନଙ୍କ ସହିତ ପରିଚିତ କରାଇ ଆସିବି ।''

ମୁଁ କହିଲି, ''ବେଶ୍ ଭଲ ହେବ ବାପା ।''

ବାପା ସେ ଦିନ ତାଙ୍କ କାମରେ ଚାଲିଗଲେ ।

ସୋମବାର ଦିନ ଆମେ ବାପପୁଅ ଦିନ ନଅଟାବେଳେ ସ୍କୁଲ ଅଭିମୁଖେ ବାହାରିଲୁ । ଆମ ଗାଁ ଠାରୁ ବିଦ୍ୟାଳୟଟି ଦୁଇ କିଲୋମିଟର ଦୂରରେ ଥିଲା । ଆମେ ଦୁହେଁ ଚାଲି ଚାଲି ଗଲାବେଳେ ବାପା କହିଲେ, ''ତୁ ପଢ଼ିବାକୁ ଯାଉଥିବା ବିଦ୍ୟାଳୟର ସୁନାମ ଅଛି । ଅତୀତରେ ସେଇ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଜଣେ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ଶିକ୍ଷକ ଥିଲେ । ଇଂରାଜୀ ଶିକ୍ଷକ ମଧ୍ୟ ରାଜ୍ୟପାଳଙ୍କ ଠାରୁ ପୁରସ୍କାର ପାଇ ସ୍କୁଲ ପାଇଁ ସୁନାମ ଆଣିଥିଲେ । ଏବେ ସେମାନେ ଚାକିରିରୁ ଅବସର ନେଲେଣି । ତେବେ ସେମାନଙ୍କ କାର୍ଯ୍ୟକଳାପ ଯୋଗୁଁ ଏବେ ମଧ୍ୟ ଆଖପାଖ ପାଞ୍ଚଖଣ୍ଡ ଗାଁରେ ବିଦ୍ୟାଳୟର ନାମ ପୂର୍ବପରି ରହିଅଛି । ଯେକୌଣସି ଲୋକ ତାଙ୍କ ପୁଅ ଝିଅଙ୍କୁ କେଉଁଠି ପଢ଼ାଇବା ପ୍ରସଙ୍ଗ ଉଠାଇଲେ ଆଗେ ଏଇ ବିଦ୍ୟାଳୟ ନାମ ଆସେ ।''

ମୁଁ ବାପାଙ୍କ କଥାକୁ ମନଧ୍ୟାନ ଦେଇ ଶୁଣୁଥିଲି । ମନେ ମନେ ଭାବୁଥିଲି, ''ଯଦି ସେମାନେ ଆଉ ସେଠାରେ ନାହାଁନ୍ତି, ତେବେ ବର୍ତ୍ତମାନର ଶିକ୍ଷକଗଣ କ'ଣ ମୋ ଭଳି ପଛୁଆ ପିଲାମାନଙ୍କୁ ଆଗେଇ ନେବେ !''

ମନର କଥା ମୋର ମନରେ ରହିଲା ।

ବାପା ସେ ଦିନ ବିଦ୍ୟାଳୟର କାର୍ଯ୍ୟାଳୟକୁ ଯାଇ ବିଦ୍ୟାଳୟରେ ମୋର ନାମ ଲେଖାଇ ଦେଲେ । ପରେ ପରେ ମୋତେ ଶିକ୍ଷକମାନେ ବସୁଥିବା ସାଧାରଣ ପ୍ରକୋଷ୍ଠକୁ ନେଇଗଲେ । ସାରମାନଙ୍କୁ ନମସ୍କାର କରି କହିଲେ, ''ଆଜ୍ଞାମାନେ ! ଏ ହେଉଛି ମୋ ପୁଅ ରଘୁ । ଆଜି ଆପଣମାନଙ୍କ ବିଦ୍ୟାଳୟରେ ତା'ର ନାମ ଲେଖାଇଦେଲି । ପିଲାଟି ପାଠ ପଢ଼ିବାରେ ଟିକିଏ ପଛୁଆ । ଆପଣମାନେ ତା'ପ୍ରତି ଟିକେ ଶୁଭ ଦୃଷ୍ଟି ଦେଲେ ସେ ସବୁ ପାଠ ଧରିଯିବ । ଆଦୌ ଦୁଷ୍ଟ ନୁହେଁ, ବଡ଼ ଶାନ୍ତ ସୁଧାର ପିଲାଟିଏ ।''

ତା'ପରେ ବାପା ମୋତେ କହିଲେ, ''ଆରେ ରଘୁ କ'ଣ ଭୂତଟା ଭଳି ଠିଆ ହୋଇ ରହିଛୁ । ତୋର ସାର ମାନଙ୍କୁ ଦଣ୍ଡବତ ହୁଅ । ସେମାନଙ୍କ ପାଦ ଧୂଳି ନିଅ ।''



ବାପାଙ୍କ କଥାମାନି ମୁଁ ସାରମାନଙ୍କୁ ନମସ୍କାର କଲି । ପ୍ରତ୍ୟେକ ପାଖକୁ ଯାଇ ପାଦଧୂଳି ନେଇ ମୁଣ୍ଡରେ ମାରଲି ।

ସାର୍‌ମାନେ ମଧ୍ୟ ମୋତେ ଆଶୀର୍ବାଦ କଲେ ।

ତା'ପରଦିନଠାରୁ ବହି ବସ୍ତାନି ଧରି ମନ ଆନନ୍ଦରେ ମୁଁ ସ୍କୁଲ ଗଲି । ବସ୍ତାନିର ବୋଝ ଟିକିଏ ଅଧିକ ଲାଗିଲା । ଭାବିଲି ବ୍ୟାଗ୍‌ର ବୋଝ ଯଦି ଏତେ ଅଧିକ, ତେବେ ପାଠର ବୋଝ କେତେ ଅଧିକ ହୋଇ

ନଥିବ । ହଉ, ପାଠର ବୋଝ ଅଧିକ ହେଲେ ମଧ୍ୟ ସାର୍‌ମାନେ ଚଳେଇନେବେ । ଅତି ସରଳ ସୁନ୍ଦର ଉଦାହରଣ ଦେଇ ପାଠ ସବୁଗୁଡ଼ିକୁ ବୁଝାଇ ଦେବେ । ମୋ ମନରେ ସେଥିପାଇଁ ଚିନ୍ତା ଓ ଦକ ରହିବ ନାହିଁ ।

ବିଦ୍ୟାଳୟ ଯିବାର ଦିନ କେଇଟାରେ ମୋର ସ୍କୁଲ ପ୍ରତି ଥିବା ଧାରଣା ସଂପୂର୍ଣ୍ଣ ବଦଳି ଗଲା । ଦେଖିଲି ଅଧିକାଂଶ ସାର ପାଠ ବୁଝାଇବାରେ ଯେତିକି ଧ୍ୟାନ ଦେଉ ନାହାଁନ୍ତି, ପାଠ ଆଦାୟ କରିବାରେ ସେତିକି କଠୋର ହେଉଛନ୍ତି । ସେମାନଙ୍କ ପ୍ରଶ୍ନର ଉତ୍ତର ନ ଦେଇ ପାରିଲେ, ''ଆଣ୍ଠୁମାଡ଼ି ବସି ରହିବାକୁ କହୁଛନ୍ତି । କେତେବେଳେ କେତେବେଳେ ପୂରା ପିରିୟଡ଼ଟା ବେଞ୍ଚ ଉପରେ ଠିଆ କରାଇ ଦେଉଛନ୍ତି ।

ମୁଁ ତ ପାଠ ପଢ଼ାରେ ଆଗରୁ ପଛୁଆଥିଲି । ଏଣିକି ଦଣ୍ଡଯୁକ୍ତ ବିଦ୍ୟାଳୟରେ ମୋ ଅବସ୍ଥା ଅଧିକ ଖରାପ ହୋଇଗଲା ।

ଅଧିକାଂଶ ସାର୍ ଆମକୁ ''ହୋମ ଓ୍ୱାର୍କ'' ଦେଲେ । ଘରେ ବିନା ସହାୟତାରେ ସେ ସବୁ କରିବା ମଧ୍ୟ ମୋ ପକ୍ଷରେ କଷ୍ଟକର ହୋଇଗଲା । ତେଣୁ ପ୍ରତିଦିନ ପ୍ରାୟତଃ ମୋତେ ସାର୍‌ମାନଙ୍କ ଆଦେଶ ଅନୁଯାୟୀ ବେଞ୍ଚ ଉପରେ ଠିଆ ହୋଇ ରହିବାକୁ ପଡ଼ିଲା । ଯେଉଁଦିନ ସାରମାନଙ୍କ ଠାରୁ ମାଡ଼ ଖାଇଲି ସେଦିନ ସ୍କୁଲରୁ ଘରକୁ ଫେରିବା ବାଟରେ ଛାଟଟିଏ ଧରି ଅଯଥାରେ ଗଛଗୁଡ଼ାକୁ ମାରି ମୋ ମନର ଅସହାୟତା ପ୍ରକାଶ କଲି ।

କ୍ରମଶଃ ଏ ଦୟନୀୟ ପରିସ୍ଥିତିରେ ମୁଁ ଲକ୍ଷ୍ୟକଲି ମୋ ମଧ୍ୟରେ ଏକ ଅଦ୍ଭୁତଶକ୍ତି ଦେଖା ଦେଇଛି । ସେ ଶକ୍ତି ମୋତେ ଆନନ୍ଦର ସହିତ ଶ୍ରେଣୀଗୃହରେ ଖାପ ଖୁଆଇ ଚଳାଇ ନେଲା । ବେଞ୍ଚ ଉପରେ ଠିଆ ହେଲା ପରେପରେ ମୁଁ ଶ୍ରେଣୀର ସମସ୍ତ ଦୃଶ୍ୟକୁ ଉପଭୋଗ କଲି । ଶିକ୍ଷାଦାନ ନ କରି ସାରମାନେ ପାଠ ଆଦାୟ କରିବାରେ ମାରଧର ପାଟିଗୋଳ କରି ସତେ ଯେମିତି ଏକ ନାଟକବାଜି କରୁଛନ୍ତି ।

ମୋ ମନରେ ଏଣିକି ଆଉ ମାଡ଼ ଗାଳି ପ୍ରତି ଭୟ ରହିଲା ନାହିଁ। ଯେଉଁଦିନ ବେଞ୍ଚ ଉପରେ ଠିଆ ହୋଇ ରହିଲି ସେ ଦିନ ସାରଙ୍କୁ ମନେ ମନେ ଧନ୍ୟବାଦ ଦେଲି। ଭାବିଲି ପାଠକୁ ନବୁଝି ଘୋଷି ସାର୍‌ଙ୍କୁ ମୁକାବିଲା ଦେବା ଅପେକ୍ଷା ବେଞ୍ଚ ଉପରେ ଠିଆ ହୋଇ ସାର୍‌ଙ୍କ ଅଙ୍ଗଭଙ୍ଗୀ ଓ ଅନ୍ୟ ପିଲାଙ୍କ ହାବଭାବ ଲକ୍ଷ୍ୟ କରିବା ବରଂ ଆନନ୍ଦଦାୟକ।

ଦିନେ ବେଞ୍ଚ ଉପରେ ଠିଆ ହୋଇ ଦଣ୍ଡ ପାଉଥିଲା ବେଳେ ସ୍ଥିର କଲି, ''ଏମିତି ପାଠ ପଢ଼ିବା ନାମରେ ସ୍କୁଲକୁ ଆସିବା ଅପେକ୍ଷା ପାଠ ପଢ଼ା ଛାଡ଼ିଦେବା ଭଲ। ଜମିକୁ ଯାଇ ବାପାଙ୍କୁ ଚାଷ ବାସ କାର୍ଯ୍ୟରେ ସାହାଯ୍ୟ କରିବା ଭଲ। ବାପାଙ୍କୁ ସଫା ସଫା କହିଦେବା ଭଲ, ''ବାପା! ସେ ବିଦ୍ୟାଳୟରେ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ପ୍ରଧାନ ଶିକ୍ଷକ ନାହାଁନ୍ତି ବା ରାଜ୍ୟପାଳ ସମ୍ମାନ ପାଇଥିବା ଶିକ୍ଷକ ନାହାଁନ୍ତି। ସେମାନଙ୍କ ସମକକ୍ଷ ଶିକ୍ଷକ ଯେଉଁଦିନ ସ୍କୁଲକୁ ଆସିବେ, ସେଦିନ ମୁଁ ପଢ଼ିବାକୁ ଯିବି।''

ଅବଶ୍ୟ ସେ ସବୁ କଥା ଆଉ ବାପାଙ୍କୁ କହିବାକୁ ପଡ଼ିଲା ନାହିଁ।

ମୋ ମନରେ ବିଦ୍ୟାଳୟ ପ୍ରତି ଏକ ଘୃଣାଭାବ ଜମାଟ ବାନ୍ଧି ଆସୁଥିଲା ବେଳେ ମୁଁ ଶୁଣିଲି ଯେ ଆମ ବିଦ୍ୟାଳୟକୁ ଜଣେ ସ୍ୱନାମଧନ୍ୟ ପ୍ରଧାନଶିକ୍ଷକ ଆସୁଛନ୍ତି। ପାଠ ପଢ଼ା ସଂପର୍କରେ ତାଙ୍କର ବିଚାରଧାରା କୁଆଡ଼େ ଅତି ଉନ୍ନତ। ସେ ଯେଉଁ ବିଦ୍ୟାଳୟରେ ପ୍ରଧାନଶିକ୍ଷକ ଭାବେ ଯୋଗଦାନ କରନ୍ତି। ସେ ବିଦ୍ୟାଳୟର ରୂପରେଖ ମଧ୍ୟ ବଦଳିଯାଏ।

ସତକୁ ସତ ଦିନ କେଇଟାରେ ଆମର ନୂଆ ପ୍ରଧାନ ଶିକ୍ଷକ ଆସି ଆମ ସ୍କୁଲରେ ଯୋଗଦାନ କଲେ। ମୁଁ ପଢୁଥିବା ଷଷ୍ଠ ଶ୍ରେଣୀ ଆମ ବିଦ୍ୟାଳୟର ସବୁଠାରୁ ସାନ ଶ୍ରେଣୀ ହୋଇଥିବା ହେତୁ ସେ ଆମକୁ ଇଂରାଜୀ ଓ ଇତିହାସ ପଢ଼ାଇଲେ।

ପାଠ ପଢ଼ାଇବା ସମୟରେ ସେ ବିଭିନ୍ନ କୌଶଳ ଅବଲମ୍ବନ କରି ଆମ ମନରେ ଆଗ୍ରହ ସୃଷ୍ଟି କଲେ। ବିଭିନ୍ନ ବିଷୟବସ୍ତୁ ସଂପର୍କରେ ଆମ ସହିତ ଆଲୋଚନା କଲେ। ଆମ ମନ ମଧ୍ୟରେ ଥିବା ଚିନ୍ତା ଓ ଭାବନାକୁ

ପ୍ରକାଶ କରିବାକୁ ଆମକୁ ସୁଯୋଗ ଦେଲେ । ଖେଳ, ନାଚ, ଗୀତ, ଆଲୋଚନା, ତର୍କସଭା ମାଧ୍ୟମରେ ଆମର ବିକାଶ ଘଟାଇଲେ ।

ନୂତନ ପ୍ରଧାନ ଶିକ୍ଷକଙ୍କ ଏଭଳି ଆଚରଣ ଅନ୍ୟାନ୍ୟ ଶିକ୍ଷକଙ୍କ ଉପରେ ପ୍ରଭାବ ପକାଇଲା । ଚାହୁଁ ଚାହୁଁ ଦିନ କେଇଟାରେ ଆମ ବିଦ୍ୟାଳୟରୁ ସମସ୍ତ ଦଣ୍ଡ ବ୍ୟବସ୍ଥା ଉଠିଗଲା । ଏଣିକି ବିଦ୍ୟାଳୟ କାନ୍ଥ ଓ ବାଡ଼ରେ ଦଣ୍ଡମୁକ୍ତ ବିଦ୍ୟାଳୟ ବୋଲି ଲେଖିବାକୁ ପଡ଼ିଲା ନାହିଁ ।

ବିଦ୍ୟାଳୟର ଦୁର୍ବଳପିଲାମାନେ ମଧ୍ୟ ପାଠ ପଢ଼ିଲେ । ମୋର ପାଠ ପଢ଼ାରେ ବିଶେଷ ଉନ୍ନତି ଘଟିଲା । ଦୀର୍ଘଦିନରୁ ପାଠପ୍ରତି ମନ ମଧ୍ୟରେ ଜମାଟ ବାନ୍ଧିଥିବା ନୈରାଶ୍ୟ ଭାବ ମଧ୍ୟ ଦୂରେଇଗଲା ।

ଦିନେ ସଞ୍ଜବେଳେ ବାପା ଚାଷବାସ କାମରୁ ଫେରି ମୋତେ ପଚାରିଲେ, ''ଆରେ ରଘୁ! ମୁଁ କ'ଣ ଶୁଣୁଛି ତୁମ ବିଦ୍ୟାଳୟକୁ ରାଷ୍ଟ୍ରପତି ପୁରସ୍କାର ପାଇବା ଭଳି ଜଣେ ପ୍ରଧାନଶିକ୍ଷକ ଆସିଛନ୍ତି । ତାଙ୍କ ଯୋଗୁଁ ପିଲାମାନେ ଏବେ ଖୁବ୍ ଭଲ ପାଠ ପଢୁଛନ୍ତି ।''

ମୁଁ ବାପାଙ୍କ କଥାଶୁଣି ଚଟାପଟ କହି ପକାଇଲି, ''ବାପା ! ତୁମେ ଯାହା ଶୁଣିଚ ସତ । କିନ୍ତୁ ତାହାଠାରୁ ବଡ଼ କଥାହେଲା ଆମ ନୂଆ ପ୍ରଧାନ ଶକ୍ଷକ କେବେ ରାଷ୍ଟ୍ରପତି ପୁରସ୍କାର ପାଇବା ପାଇଁ ଦରଖାସ୍ତ କରି ନାହାଁନ୍ତି । ତାଙ୍କ ଭଳି ଆମ ରାଜ୍ୟରେ ଅନେକ ସ୍ୱାଭିମାନୀ ଶିକ୍ଷକ ଅଛନ୍ତି; ଯେଉଁମାନେକି ଦରଖାସ୍ତ କରି ପୁରସ୍କାର ପାଇବାକୁ ଆଦୌ ପସନ୍ଦ କରନ୍ତି ନାହିଁ ।''

ମୋ କଥା ଶୁଣି ବାପା ହସିଲେ ।

କହିଲେ, ''ବେଶ୍ ଭଲ କଥା । ତୋ କଥା ଶୁଣି ଭାରି ଖୁସି ଲାଗିଲା । ଏଇ କେଇଦିନ ହେଲା ମୁଁ ଦେଖୁଛି ତୁ ଆଗ ଅପେକ୍ଷା ଟିକିଏ ବୁଦ୍ଧିଆ ହୋଇ ଗଲୁଣି । ଆଉ ବଡ଼ ବଡ଼ କଥା ମଧ୍ୟ କହିବାକୁ ଶିଖିଲୁଣି ।''

●



ଡକ୍ଟର ଦିଗରାଜ ବ୍ରହ୍ମା
ଏମ୍.ଏ., ଏମ୍.ଏଡ୍, ପିଏଚ୍.ଡ଼ି. (ଉତ୍କଳ)
ଇଟିଭି ପ୍ରଡକସନ୍ (କାର୍ଲାଇଲ, ଗ୍ରେଟ୍ ବ୍ରିଟେନ)
ଜନଶିକ୍ଷା ପ୍ରକଳ୍ପ ପରିଚାଳନା (ଡିପିୟୁ, ବ୍ୟାଙ୍କକ୍)
ଜନ୍ମ: ୧୨ ଏପ୍ରିଲ, ୧୯୪୮
ପିତା: ସ୍ୱର୍ଗତ ଲକ୍ଷ୍ମଣ ପଣ୍ଡା
ମାତା: ସ୍ୱର୍ଗତା ଜାନକୀ ଦେବୀ
ଗ୍ରାମ: ରୁଦ୍ରପୁର, ଛତିଆ, କଟକ
ଅବସ୍ଥାନ: ମହାବୀର ବିହାର, କଳାରାହାଙ୍ଗ, କିଟ୍,
ଭୁବନେଶ୍ୱର- ୭୫୧୦୨୪

ଡକ୍ଟର ଦିଗରାଜ ବ୍ରହ୍ମା ରାଜ୍ୟର ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଓ ଶିକ୍ଷାବିତ୍ । ଶିକ୍ଷା, ସାହିତ୍ୟ ଓ ଜୀବନୀ ପୁସ୍ତକ ରଚନା ଓ ଗବେଷଣା କ୍ଷେତ୍ରରେ ତାଙ୍କର ସ୍ଥାନ ସ୍ୱତନ୍ତ୍ର ।

ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ସେ ଶିକ୍ଷା ଓ ସାହିତ୍ୟର ବିକାଶ କ୍ଷେତ୍ରରେ କାର୍ଯ୍ୟ କରି ଆସିଛନ୍ତି । ଏତଦ୍‌ବ୍ୟତୀତ ଜଣେ ସ୍ତମ୍ଭକାର ହିସାବରେ ମଧ୍ୟ ତାଙ୍କର ଖ୍ୟାତି ରହିଅଛି । ତାଙ୍କ ରଚିତ ପୁସ୍ତକ ମଧ୍ୟରେ- ଛତିଆବଟ ମହାପୁରୁଷ ହାଡ଼ିଦାସ (୧୯୭୦), ନନ୍ଦ ଦାସକୃତ ଭ୍ରମଣ ଗୀତ ପଦ୍ୟାନୁବାଦ (୨୦୦୭), ପଣ୍ଡିତ ନୀଳକଣ୍ଠ (୧୯୯୧), ଆଦି ଉଲ୍ଲେଖଯୋଗ୍ୟ । ତାଙ୍କର ଅନ୍ୟାନ୍ୟ ସାରସ୍ୱତ କୃତି ହେଲା, 'ମୋ ସ୍ମୃତିର ଆଲେଖ୍ୟ' (୨୦୧୭), ପ୍ରଜ୍ଞାପୁରୁଷ ପ୍ରଫେସର ଶରତ ଚନ୍ଦ୍ର ଦାଶ (୨୦୧୮) ଓ ବାଗ୍ମୀପୁରୁଷ ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶ (୨୦୧୯) । ସଂଗ୍ରାମୀ ସାଧକ ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀ (୨୦୨୦) ଜୀବନୀ ପୁସ୍ତକ ଓଡ଼ିଶାର ଆଧ୍ୟାତ୍ମିକ ଇତିହାସ ଓ ତତ୍କାଳୀନ ସ୍ୱାଧୀନତା ସଂଗ୍ରାମର ଏକ ଅମୂଲ୍ୟ ଗ୍ରନ୍ଥ । ଅନ୍ୟ ଏକ କୃତି ଶ୍ରୀବୈକୁଣ୍ଠ ଲୀଳାମୃତ ହେଉଛି ବାବା ବୈକୁଣ୍ଠନାଥଙ୍କ ଲୀଳାଖେଳାର ଏକ କାବ୍ୟିକ ଉପସ୍ଥାପନ ଯାହାର ପରିକଳ୍ପନା କରିଛନ୍ତି ବାବା ସତ୍ୟାନନ୍ଦ ଦାସ ।

ଏହି ଅବସରରେ ଡକ୍ଟର ବ୍ରହ୍ମାଙ୍କର ସୃଜନକ୍ଷମ ଦୀର୍ଘ ନିରାମୟ ଜୀବନ ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛୁ ।

- ପ୍ରକାଶକ

ISBN 978-81-931182-3-2




